# ପାଠ 10
# पाठ

## ବଜାର ଦର
## बज़ार दर

## बाज़ार के भाव

ସୁପ୍ରିୟା : ସବିତା, ତୁମେ କୁଆଡେ ଯାଇଥିଲ କି, କ'ଣ ବୁଲିବାକୁ ଯାଇଥିଲ?

ସବିତା : ନାଇଁ, ମୁଁ ବୁଲିବାକୁ ଯାଇନଥିଲି । ମୁଁ ବଜାରକୁ ଯାଇଥିଲି ।

ସୁପ୍ରିୟା : କ'ଣ ସବୁ ତୁମେ ଆଣିଲ ?

ସବିତା : ଆଗକୁ ରଜ ଆସୁଛି । ମୁଁ ପିଲାମାନଙ୍କ ପାଇଁ ଲୁଗାପଟା କିଣିବାକୁ ଯାଇଥିଲି ।

ସୁପ୍ରିୟା : ଲୁଗା ଦାମ ତ ଆକାଶ ଛୁଇଁଲାଣି । ବଜାର କରିବାକୁ ଡର ଲାଗୁଛି ।

ସବିତା : ମୁଁ 'ସରସ୍ୱତୀ ପୂଜା'ରେ ସମସ୍ତଙ୍କ ପାଇଁ ଲୁଗା କରିଥିଲି । ମୋ ବଡ଼ ଭାଇ ଗଲା ମାସରେ ଆମେରିକାରୁ

सुप्रिया : सविता, तुम कहाँ गई थी ? क्या घूमने के लिए गई थी ?

सविता : नहीं, मैं घूमने के लिए नहीं गई थी। मैं बाज़ार गई थी।

सुप्रिया : तुम ने क्या क्या लाईं हो ?

सविता : आगे (कुछ दिन आगे) 'रज' आ रहा है। मैं बच्चों के लिए कपड़े खरीदने गई थी।

सुप्रिया : कपड़ों के दाम तो आकाश छू रहे हैं। बाज़ार जाने में डर लग रहा है।

सविता : मैंने 'सरस्वती पूजा' में सब के लिए कपड़े लाए थे। मेरे बड़े भैया पिछले महीने अमेरिका से आए थे। लिजा के लिए वहाँ से सुंदर फ्रॉक लाए थे। लिजा उसे 'पहली रज' में पहनेगी। लेकिन 'संक्रांति' और 'भूमिदहन' के लिए नये फ्रॉक बनाने

ଆସିଥିଲେ । ଲିଜା ପାଇଁ ସେଠୁ ଗୋଟେ ସୁନ୍ଦର ଜାମା ଆଣିଥିଲେ । ଲିଜା ସେଟା 'ପହିଲି ରଜ'ରେ ପିନ୍ଧିବ । ହେଲେ 'ସଂକ୍ରାନ୍ତି' ଆଉ 'ଭୂମି ଦହନ' ପାଇଁ ନୂଆ ଜାମାତ କରିବାକୁ ପଡ଼ିବ ।

पड़ेंगे।

ସୁପ୍ରିୟା : ତୁମେ କ'ଣ ଏଥର 'ପୋଡ଼ପିଠା' କରିବ ନାହିଁ କି ?

सुप्रिया : क्या तुम इस बार 'पोड़पिठा' नहीं बनाओगी ?

ସବିତା : ଗଲା ବର୍ଷ ମୁଁ ବହୁତ ପିଠା କରିଥିଲି । ଯଥା :- ପୋଡ଼ପିଠା, କାକରା ପିଠା, ଆରିଷା ପିଠା, ମଣ୍ଡା ପିଠା, ଚ୍ଛୁଞ୍ଚି ପତର ପିଠା ଇତ୍ୟାଦି । ସାଇରେ ସମସ୍ତଙ୍କୁ ପିଠା ବାଣ୍ଟିଥିଲି । ଏଥର ବୋଧହୁଏ ମୁଁ କରିବିନି । ଗାଁରୁ ନଡ଼ିଆ ଗୁଡ଼ିକ ଆସିଥିଲା । ସବୁ ସରି ଗଲାଣି । ଏବେ ନଡ଼ିଆ ବଜାରରୁ କିଣିବାକୁ ପଡ଼ିବ ।

सविता : पिछले साल मैंने बहुत 'पिठा' बनाया था। जैसे:- पोड़पिठा, काकरापिठा, आरिषापिठा, मंडापिठा, छुंचिपतर पिठा आदि। पड़ोस में मैंने सबको पिठा बाँटा था। इस बार शायद नहीं बनाऊँगी। गाँव से नारियल लाए थे। सब खत्म हो गए। अब नारियल बाज़ार से खरीदने पड़ेंगे।

ସୁପ୍ରିୟା : ଆଜିକାଲି ନଡ଼ିଆଟିଏର ଦାମ୍ ତ ଚାରି ଟଙ୍କା, ପାଞ୍ଚ ଟଙ୍କା ହୋଇଛି । ଗତ ବର୍ଷ ମୋ ଶାଶୂ ଆସିଥିଲେ । ସେ ବହୁତ ନଡ଼ିଆ ଆଣିଥିଲେ । ମତେ ବି ଖୁବ୍ ସାହାଯ୍ୟ

सुप्रिया : आजकल एक नारियल के दाम तो चार या पाँच रुपए हैं। पिछले साल मेरी सॉस आयी थीं। उन्हों ने बहुत नारियल लाई थीं। मेरी भी बहुत सहायता की थी।

सविता : हाँ, मुझे याद है। तुमने हमें भी 'पोड़पिठा' दिए थे।

सुप्रिया : अच्छा सविता ! रीता की शादी के समय तुमने कहाँ से गहने खरीदे थे?

କରିଥିଲେ ।

ସବିତା : ହଁ, ମୋର ମନେ ଅଛି । ତୁମେ ଆମକୁ ମଧ୍ୟ 'ପୋଡ ପିଠା' ଦେଇଥିଲ ।

ସୁପ୍ରିୟା : ଆଚ୍ଛା ସବିତା, ରୀତା ବାହାଘର ବେଳେ ତୁମେ କେଉଁଠୁ ଗହଣା କିଣିଥିଲ ?

ସବିତା : ମୁଁ ତ ଆଗରୁ କିଛି ରଖି ନଥିଲି । କଟକରୁ ହିଁ ସବୁ ଗହଣା କିଣିଥିଲୁ । ସୁନାର ଦାମ୍ ସେତେବେଳେ ବହୁତ ବଢ଼ି ଯାଇଥିଲା । ପରେ ଅବଶ୍ୟ କମି ଯାଇଥିଲା । ତମେ କେବେ ଝିଅ ବାହାଘର କରୁଛ କି ?

ସୁପ୍ରିୟା : ହଁ, ଗୋଟେ ଜାଗାରେ ଠିକ୍ କରିଥିଲୁ । ବରଘର ବହୁତ ଯୌତୁକ ମାଗିଲେ । ଆମେ ମନା କରିଦେଇଥିଲୁ । ବାହାଘର ବନ୍ଦ ହୋଇଯାଇଥିଲା । ଏବେ ପୁଣି ଆଉ ଗୋଟେ ଜାଗାରେ ଠିକ୍ କରିଛୁ । ସେମାନେ ବହୁତ ଭଲ ଲୋକ । ଆର ମାସ ପନ୍ଦର ତାରିଖରେ ବାହାଘର କରିବୁ ।

**सविता : मैंने तो पहले कुछ नहीं रखा था। कटक से ही सब गहने खरीदे थे। सोने का दाम तब बहुत बढ़ गया था। बाद में अवश्य कम हो गया था। तुम बेटी की शादी कब कर रही हो ?**

**सुप्रिया : हाँ, एक जगह ठीक किया था। लेकिन वर के घरवालों ने बहुत दहेज माँगा। हम ने इनकार कर दिया था। शादी रुक गई थी। अब फिर एक और जगह ठीक की है। वे बहुत अच्छे लोग हैं। अगले महीने की पंद्रह तारीख को शादी करेंगे।**

## शब्दार्थ

| ओड़िआ शब्द | हिंदी अर्थ |
|---|---|
| ରଜ | रज (ओड़िशा का एक प्रधान पर्व) |
| ଲୁଗାପଟା | कपड़ा |
| ଦାମ | भाव, दाम, कीमत |
| ଆକାଶ | आकाश |
| ଡର | डर |
| ସରସ୍ୱତୀ ପୂଜା | सरस्वती पूजा |
| ବଡ଼ଭାଇ | बड़ा भाई |
| ଜାମା | फ्रॉक |
| ପହିଲି ରଜ | पहली रज |
| ସଂକ୍ରାନ୍ତି | 'संक्रांति' |
| ଭୂମି ଦହନ | 'भूमिदहन' |
| ପୋଡ଼ ପିଠା | चावल, उड़द दाल, छेना, नारियल और गुड़ से बना खाद्य |
| ଛୁଂଚିପତର ପିଠା | चावल, उड़द दाल, नारियल और गुड़ मिलाकर उबाला हुआ पानी के चाप में हलदी के पतों में बना खाद्य |
| ଏଣ୍ଡୁରି ପିଠା | चावल, उड़द दाल, नारियल, गुड़ आदि से बना खाद्य |
| ନଡ଼ିଆ | नारियल |
| ଚାରିଟଙ୍କା | चार रुपए |
| ପାଞ୍ଚଟଙ୍କା | पाँच रुपए |
| ସୁନା | सोना |
| ବଢ଼ିଯାଇଥିଲା | बढ़ गया था |
| ଅବଶ୍ୟ | अवश्य |
| କମିଯାଇଥିଲା | कम हो गया |

| | |
|---|---|
| ଯୌତୁକ | **दहेज** |
| ଆରମାସ | **अगला महीना** |
| ପନ୍ଦର ତାରିଖ | **पंद्रह तारीख़** |
| ବାହାଘର | **शादी** |
| ଗୁଡ଼ିକ | **एक से ज्यादा** |

## अभ्यास

**I. नीचे दिए गए शब्द-युग्म तथा वाक्य दोहराइए।**

1) 1. ଲୁଗାପଟା
   2. ପହିଲି ରଜ
   3. ପୋଡ଼ପିଠା
   4. ଆଜିକାଲି

2) 1. ମୁଁ ସରସ୍ୱତୀ ପୂଜାରେ ସମସ୍ତଙ୍କ ପାଇଁ ଲୁଗା କରିଥିଲି।
   2. ମୁଁ ପିଲାମାନଙ୍କ ପାଇଁ ଲୁଗାପଟା କିଣିବାକୁ ଯାଇଥିଲି।
   3. ସବିତା, କୁଆଡେ ଯାଇଥିଲ କି ?
   4. ନାଇଁ, ମୁଁ ବଜାରକୁ ଯାଇଥିଲି।
   5 ଲୁଗା ଦାମତ ଆକାଶ ଛୁଇଁଲାଣି।
   6 ଆଜି କାଲି ନଡ଼ିଆଟିଏର ଦାମ ଚାରିଟଙ୍କା, ପାଞ୍ଚ ଟଙ୍କା ହୋଇଛି।

**II. नीचे दिए गए वाक्यों में रेखांकित शब्दों के स्थान पर उनके नीचे दिए गए शब्दों / शब्दयुग्मों का प्रयोग कर वाक्य बनाइए।**

1) ମୁଁ ସରସ୍ୱତୀ ପୂଜାରେ ସମସ୍ତଙ୍କ ପାଇଁ ଲୁଗା କରିଥିଲି।

ତୁମମାନଙ୍କ ପାଇଁ
ସେମାନଙ୍କ ପାଇଁ
ପିଲାମାନଙ୍କ ପାଇଁ
ଝିଅମାନଙ୍କ ପାଇଁ
ଘରଲୋକଙ୍କ ପାଇଁ

2) ସବିତା କୁଆଡେ ଯାଇଥିଲ କି ?

କେମିତି
କାହିଁକି
କେବେ
କେତେବେଳେ
କେଉଁଆଡ଼େ

3) ତୁମେ ଆମକୁ <u>ପୋଡ଼ପିଠା</u> ଦେଇଥିଲ ।

କାକରା ପିଠା
ଆରିଷା ପିଠା
ଏଣ୍ଡୁରି ପିଠା
ଚୁଡ଼ିପତର ପିଠା
ମଣ୍ଡା ପିଠା

4) <u>ଲୁଗା ଦାମତ</u> ଆକାଶ ଛୁଇଁଲାଣି ।

ଦରଦାମ
ପରିବା ଦାମ
ତେଲ ଦାମ
ନଡ଼ିଆ ଦାମ
ଚିନି ଦାମ

5) ନାଇଁ, ମୁଁ <u>ବଜାରକୁ</u> ଯାଇ ନଥିଲି ।

ସ୍କୁଲକୁ
ଅଫିସକୁ
କୁଆଡ଼କୁ
ବଗିଚାକୁ
ଆମ୍ବତୋଟାକୁ

**III. कोष्ठक में दिए गए शब्दों का प्रयोग कर वाक्य पूरे कीजिए।**

(ସାଇରେ, ସରସ୍ୱତୀ ପୂଜାରେ, ରଜ, ଜାମା, ପୋଡ଼ପିଠା)

1. ଆଗକୁ _____ ଆସୁଛି ।
2. ଲିଜା ପାଇଁ ସୁନ୍ଦର _____ ଆଣିଥିଲେ ।
3. ମୁଁ ______ ସମସ୍ତଙ୍କ ପାଇ ନୂଆ ଲୁଗା କରିଥିଲି ।
4. ତୁମେ କ'ଣ _____ କରିବ ନାହିଁକି ?
5. ମୁଁ ସମସ୍ତଙ୍କୁ _____ ପିଠା ବାଣ୍ଟିଥିଲି ।

**IV. (क) वर्ग में दिए गए वाक्यांशों के साथ (ख) वर्ग के उपयुक्त शब्द जोड़कर वाक्य बनाइए।**

| (क) | (ख) |
|---|---|
| ଲୁଗା ଦାମତ ଆକାଶ | ବାଣ୍ଟିଥିଲି |
| ସାଇରେ ସମସ୍ତଙ୍କୁ ପିଠା | ଛୁଇଁଲାଣି |
| ଗତବର୍ଷ ମୋ ଶାଶୂ | କରି ହେବନି |
| ବରଘର ବହୁତ | ଆସିଥିଲେ |
| ଏଥର ବୋଧହୁଏ | ଯୌତୁକ ମାଗିଲେ |

**V. कोष्ठक में दिए गए शब्दों के उपयुक्त रूपों का प्रयोग कर वाक्य पूरे कीजिए।**

1. ମୁଁ ____ ଯାଇନଥିଲି। (ବଜାର)
2. ମୁଁ ସମସ୍ତଙ୍କ ପାଇଁ ଲୁଗା _____। (କର)
3. ଲିଜା ସେଇଟା ପଢ଼ିଲି ____ ପିନ୍ଧିବ। (ରଜ)
4. ଗାଁରୁ ନଡ଼ିଆ _____। (ଆସ)
5. ତୁମେ _____ ମଧ୍ୟ ପିଠା ଦେଇଥିଲ। (ଆମ)

**VI. कोष्ठक में दिए गए शब्दों का सही स्थान पर प्रयोग कर दिए गए वाक्यों का विस्तार कीजिए।**

**उदाहरण** (1) : ମୋ ବଡ଼ ଭାଇ ଆସିଥିଲେ। (ଗଲା ମାସରେ, ଆମେରିକାରୁ)
ମୋ ବଡ଼ ଭାଇ ଗଲା ମାସରେ ଆମେରିକାରୁ ଆସିଥିଲେ।

1. ମୁଁ ଭୁବନେଶ୍ୱର ଯାଇଥିଲି। (କାଲି ସକାଳେ, ବସରେ)
2. ବାପା ବଜାରରୁ ପରିବା ଆଣିଥିଲେ। (କାଲି, ଭଲ) ।
3. ସେମାନେ ପାଞ୍ଚ ବର୍ଷ ଧରି ଗାଁରେ ରହୁଥିଲେ। (କଟକର, ଏକ)
4. ଆମଘରକୁ ଆସନ୍ତୁ। (ପଅରଦିନ, ଖାଇବାକୁ)
5. ମୋ ଭଉଣୀର ବାହାଘର। (ଆସନ୍ତା ମାସ, ପନ୍ଦର ତାରିଖରେ)
6. ତୁମେ ଆମକୁ ପୋଡ଼ପିଠା ଦେଇଥିଲ। (କାଲି ରୁଚିକର)
7. ସେ ଦେଇଥିଲେ । (ପିଲାମାନଙ୍କୁ, ନୂଆବହି)
8. ତୁ ଦେଇଥିଲୁ । (ଆମମାନଙ୍କୁ, ପିଠା)
9. ତୁମେମାନେ ଦେଇଥିଲ । (ସାଙ୍ଗମାନଙ୍କୁ, କଲମ)
10. ଆପଣ ଦେଇଥିଲେ । (ଭଉଣୀଙ୍କୁ, ଶାଢ଼ୀ)
11. ଆପଣମାନେ ଦେଇଥିଲେ । (ସେମାନଙ୍କୁ, ଆରିଷା ପିଠା)
12. ସେମାନେ ଦେଇଥିଲେ। (ଶିକ୍ଷକମାନଙ୍କୁ, ଉପହାର)

**VII. उदाहरण के अनुसार तीन तीन शब्दों का प्रयोग कर दिए गए छोटे वाक्यों का विस्तार कीजिए।**

**उदाहरण :-** ଆମେମାନେ ଖାଇଥିଲୁ।
 କାଲି ଆମେମାନେ ତାଙ୍କଘରେ ପୋଡ଼ପିଠା ଖାଇଥିଲୁ।

1. ତୁମେ ଦେଖିଥିଲ ।
2. ମୁଁ ଲେଖିଥିଲି ।
3. ସେମାନେ ବୁଲିଥିଲେ ।
4. ରମା ଗାଇଥିଲା ।
5. ଆପଣ ବାଣ୍ଟିଥିଲେ ।

**VIII. कोष्ठक में दिए गए हिंदी शब्दों के समानार्थक ओड़िआ शब्दों का प्रयोग कर वाक्य पूरे कीजिए।**

1. ମୁଁ ଗଲା ମାସରେ ମନ୍ଦିର _____ । **(गया था)**
2. ବାପା କେବେ _____ ? **(आए थे)**
3. ଲିଜା ପାଇଁ, ସୁନ୍ଦର ଜାମା _____। **(लाए थे)**
4. ତୁମେ କ'ଣ ପୋଡ଼ ପିଠା ____। **(नहीं करोगे)**
5. ସେ ମତେ ବି _____ । **(मदद किया था)**

## पढ़िए और समझिए

### ରୀତାର ବାହାଘର

### रीतार बाहाघर

ଫାଲ୍‌ଗୁନ ମାସରେ ରୀତାର ବାହାଘର ହୋଇଥିଲା। ସେ ଦିନ ସକାଳୁ ରୀତା ହଳଦିଆ ପାଟ ଶାଢ଼ୀ ପିନ୍ଧିଥିଲା। କେତେ ଗହଣା ପିନ୍ଧିଥିଲା। ରୀତା ଭାରି ସୁନ୍ଦର ଦିଶୁଥିଲା। ସଞ୍ଜ ବେଳେ ରୀତାର ବର ଆସିଲା। କେତେ ବରଯାତ୍ରୀ ଆସିଥିଲେ। ହୁଳହୁଳି ପଡ଼ିଥିଲା। ଶଙ୍ଖ ବାଜିଥିଲା। ରୀତା ଓ ତା' ବର ମୁକୁଟ ପିନ୍ଧିଥିଲେ। ସେମାନେ ବେଦୀ ଉପରେ ବସିଥିଲେ। ସେଠି ପୁରୋହିତ ମନ୍ତ୍ର ପଢ଼ିଥିଲେ ଓ ହୋମ କରିଥିଲେ। ରୀତାର ବର ଉଜ୍ଜ୍ୱଳ ସେ ମଧ୍ୟ ବେଦୀରେ ପ୍ରସନ୍ନତାର ସହିତ ବସିଥିଲେ। ତାଙ୍କର ପରିବାରର ସମସ୍ତ ସଦସ୍ୟମାନେ ବେଦୀର ଚାରିପାଖରେ ବସିଥିଲେ। ନବଦମ୍ପତ୍ତିଙ୍କୁ ଦେଖି ସମସ୍ତେ ଖୁସି ହେଉଥିଲେ। ଆଉ ମଧ୍ୟ ତାଙ୍କର ଅନେକ ଫଟୋ ଉଠାଉଥିଲେ। ରୀତା ଓ ଉଜ୍ଜ୍ୱଳ ଦୁହେଁ ବହୁ ସୁନ୍ଦର ଦେଖାଯାଉଥିଲେ। ରୀତାର ଭଉଣୀ ଶିଖା, ରୀତା ଓ ଉଜ୍ଜ୍ୱଳଙ୍କର ହାତଗଣ୍ଠି ଫିଟାଇଥିଲା। ଆଉ ହାତଗଣ୍ଠି ବଦଳରେ ସେମାନେ ତାକୁ ଗୋଟିଏ ଉପହାର ସ୍ୱରୂପ ପାଟ ଶାଢ଼ୀଟିଏ ଦେଲେ।

ଶୁଭ ମୁହୂର୍ତ୍ତରେ ବାହାଘର ଆରମ୍ଭ ହୋଇ ବିଭିନ୍ନ ପ୍ରକାରର କର୍ମବିଧି ଅନୁସାରେ ଶେଷ ହୋଇଥିଲା। ସବୁ ଅତିଥି ଏବଂ ପରିବାରର ସଦସ୍ୟମାନେ ନବଦମ୍ପତିଙ୍କୁ ଆର୍ଶୀବାଦ

ଦେଇଥିଲେ। ତାପରେ ସମସ୍ତେ ଭୋଜି ଖାଇଥିଲେ। ସମସ୍ତେ ଭୋଜିକୁ ଆନନ୍ଦ ସହକାରେ ଉପଭୋଗ କରି ଖାଇଥିଲେ। ସେଇ ଭୋଜିରେ ଆମିଷ, ନିରାମିଷ ଓ ମିଠା ଇତ୍ୟାଦି ତିଆରି କରାଯାଇଥିଲା।

ଉଜ୍ଜ୍ୱଳ ଓ ତାଙ୍କ ପରିବାର ନୂଆବୋହୂକୁ ଶୁଭ ମୁହୂର୍ତ୍ତ ଦେଖି ତାଙ୍କ ଘରକୁ ନେଇଯାଇଥିଲେ। ତାଙ୍କ ସାଙ୍ଗରେ ରୀତାର ବଡ଼ ଭାଇ ଭାଉଜ ମଧ୍ୟ ଯାଇଥିଲେ। ରୀତା ଶାଶୁ ଘରକୁ ଗଲାବେଳେ ବହୁତ କାନ୍ଦିଥିଲା।

## शब्दार्थ

| ओड़िआ शब्द | हिंदी अर्थ |
|---|---|
| ଫାଲ୍‌ଗୁନ୍ ମାସ | फागुन का महीना |
| ହଳଦିଆ | पीला |
| ପାଟ | 'पाट', रेशम (टस्सर) |
| ଗହଣା | आभूषण |
| ବର | वर, दुल्हा |
| ବରଯାତ୍ରୀ | वरयात्री, बाराती |
| ହୁଳହୁଳି | फूल-फूलि (मुँह के भीतर की ओर से की जानेवाली एक मंगल-ध्वनि) |
| ଶଙ୍ଖ | शंख |
| ମୁକୁଟ | मुकुट |
| ବେଦୀ | मंडप |
| ପୁରୋହିତ | पुरोहित |
| ମନ୍ତ୍ର | मंत्र |
| ହୋମ | यज्ञ |
| ଉପହାର | उपहार |
| ଖୁସି | खुशी |
| ପରଦିନ | पिछले दिन |
| ଶାଶୁଘର | ससुराल |

| | |
|---|---|
| କାନ୍ଦିଥିଲା | **रोई थी** |
| ପ୍ରସନ୍ନତା | **आनंद** |
| ପରିବାର | **परिवार** |
| ଫଟୋ | **तसवीर** |
| ସୁନ୍ଦର | **सुंदर** |
| ଯୋଡ଼ି | **जोड़ी, युग्म, दो** |
| ଭଉଣୀ | **बहन** |
| ହାତଗଣ୍ଠି | **हस्तबंधन, करबंधन** |
| ଶୁଭମୁହୂର୍ତ୍ତ | **अच्छा समय, शुभ मुहूर्त** |
| ବିଧି | **नियम** |
| ଶେଷ ହୋଇଥିଲା | **खत्म हो गया था** |
| ଅତିଥି | **अतिथि** |
| ସଦସ୍ୟମାନେ | **सदस्यों** |
| ନବଦମ୍ପତ୍ତି | **नवदंपति** |
| ଆଶୀର୍ବାଦ | **आशीर्वाद** |
| ଭୋଜି ଖାଇଥିଲେ | **भोजन किया था** |
| ଆନନ୍ଦ ସହକାରେ | **आनंद के साथ** |
| ଉପଭୋଗ | **उपभोग** |
| ଆମିଷ | **आमिष** |
| ନିରାମିଷ | **निरामिष** |
| ମିଠା | **मिठाई** |
| ନୂଆବୋହୂ | **नई बहु** |
| ଘରକୁ ନେଇଯାଇଥିଲେ | **घर में ले गए थे / गई थीं** |
| ବଡ଼ଭାଇ | **बड़ा भाई** |
| ଭାଉଜ | **भाभी** |

## अभ्यास

**I. अनुच्छेद के आधार पर नीचे दिए गए प्रश्नों के उत्तर दीजिए।**

1. ରୀତାର ବାହାଘର କେବେ ହୋଇଥିଲା ?
2. ରୀତା କେଉଁ ରଙ୍ଗର ପାଟ ଶାଢ଼ୀ ପିନ୍ଧିଥିଲା ?
3. ରୀତାର ବର କେତେବେଳେ ଆସିଲା ?
4. ରୀତା ଓ ତା' ବର କେଉଁଠି ବସିଥିଲେ ?
5. ପୁରୋହିତ କ'ଣ କରିଥିଲେ ?
6. ରୀତା ଶାଶୁ ଘରକୁ ଗଲାବେଳେ କ'ଣ କରିଥିଲା ?
7. ଉଜ୍ଜ୍ୱଳ କିଏ ?
8. କେଉଁମାନେ ବେଦୀର ଚାରିପାଖେ ବସିଥିଲେ ?
9. କାହାର ଫଟୋ ଉଠିଥିଲା ?
10. କେଉଁମାନଙ୍କର ଯୋଡ଼ି ସୁନ୍ଦର ଦେଖାଯାଉଥିଲା ?
11. କିଏ ହାତଗଣ୍ଠି ଫିଟାଇଥିଲା ?
12. ଶିଖା କିଏ ?
13. ଶିଖାକୁ ଉପହାରସ୍ୱରୂପ କ'ଣ ମିଳିଥିଲା ?
14. ରୀତା ବିଦା ହେବା ସମୟରେ ତାଙ୍କ ଘରୁ କିଏ କିଏ ଯାଇଥିଲେ?

**II. अनुच्छेद में वर्णित नीचे दी गई घटनाओं को क्रमानुसार लिखिए।**

1. ରୀତା ଶାଶୁ ଘରକୁ ଗଲାବେଳେ ବହୁତ କାନ୍ଦିଥିଲା ।
2. ରୀତା ଶାଶୁ ଘରକୁ ଯାଇଥିଲେ ।
3. ପରିବାରର ସଦସ୍ୟମାନେ ନବଦମ୍ପତିଙ୍କୁ ଆର୍ଶୀବାଦ ଦେଇଥିଲେ ।
4. ପୁରୋହିତ ମନ୍ତ୍ର ପଢ଼ିଥିଲେ ।
5. ରୀତାର ବଡ଼ ଭାଇ ଭାଉଜ ତାଙ୍କ ସାଙ୍ଗରେ ଯାଇଥିଲେ ।
6. ବରଯାତ୍ରୀ ଆସିଥିଲେ ।
7. ରୀତା ଗହଣା ପିନ୍ଧିଥିଲା ।
8. ସମସ୍ତେ ଉପହାର ଦେଇଥିଲେ ।
9. ଶୁଭ ମୁହୂର୍ତ୍ତରେ ବାହାଘର ଆରମ୍ଭ ହୋଇଥିଲା ।
10. ସମସ୍ତେ ଭୋଜିକୁ ଆନନ୍ଦ ସହକାରେ ଉପଭୋଗ କରି ଖାଇଥିଲେ ।

**III. हिंदी में अनुवाद कीजिए।**

ଶରତ ପୂର୍ଣ୍ଣମୀ ହେଉଛି 'କାର୍ତ୍ତିକ ପୂର୍ଣ୍ଣିମା'। ଏହାର ନାଁ 'କୁମାର ପୂର୍ଣ୍ଣିମା' ହେଲେ ମଧ୍ୟ ଏହା ପ୍ରକୃତରେ କୁମାରୀମାନଙ୍କର ଉତ୍ସବ। ଅବିବାହିତ ଝିଅମାନେ ଭଲ ବର ପାଇବା ପାଇଁ ଏହିଦିନ ଚନ୍ଦ୍ରଙ୍କୁ ପୂଜା କରନ୍ତି। ସେଦିନ ସବୁ ଝିଅ ନୂଆ ଲୁଗା ପିନ୍ଧନ୍ତି। ଫୁଲରେ ସଜ ହୁଅନ୍ତି। ସଞ୍ଜ ବେଳକୁ ଖଇ, କଦଳୀ, ଛେନା, ଗୁଡ଼, ଚକଟି ଜହ୍ନର ପ୍ରତିଛବି କରନ୍ତି। ଜହ୍ନକୁ ପୂଜା ଦେଇ ଦିନଯାକ ଉପାସ କରିଥିବା ଝିଅମାନେ ସେଇ ଚାନ୍ଦକୁ ଖାଆନ୍ତି।

ପୂର୍ବ ବର୍ଷ ଅପେକ୍ଷା ଏ ବର୍ଷ ପୂଜା ଭଲ ହୋଇଥିଲା। ପ୍ରାୟ ପ୍ରତ୍ୟେକଙ୍କ ଘରେ ଫୁଲକୋଠି ସଜାଯାଉଥିଲା। ସବୁ ଝିଅମାନେ ମିଶି ସଞ୍ଜବେଳେ ଜହ୍ନିଫୁଲ, କାକୁଡ଼ି ଫୁଲ, ଗଙ୍ଗଶିଉଳି ଫୁଲ ଚଉଁରା (ବୃନ୍ଦାବତୀ) ଙ୍କ ପାଖରେ ପୂଜା କରିଥିଲେ। କଇଁ ଫୁଲରେ ଫୁଲକୋଠି ସଜାଯାଇଥିଲା। ଭୂଇଁରେ ଗାର ନଟାଣି ଫୁଲ ଥୋଇ ଅତି ସୁନ୍ଦର ଦେଉଳ ରଥର ପରିକଳ୍ପନା ଓ ତା'ର ଢାଞ୍ଚା ତିଆରି କରିବା କଳାତ୍ମକତାର ଉଦାହରଣ।

ପରିଷ୍କାର ଆକାଶରେ ଅତି ସ୍ୱଚ୍ଛ କିରଣ ବିଚ୍ଛୁରିଥିବା ଚନ୍ଦ୍ରକୁ ଦେଖି ଝିଅମାନେ ମନଖୋଲା ଆନନ୍ଦ ଉପଭୋଗ କରିଥିଲେ। ପରିବାରର ସମସ୍ତେ ସେଇ ଆନନ୍ଦରେ ଭାଗୀଦାର ହୋଇଥିଲେ।

ସବୁ ଉତ୍ସବ ପରି ଏଥିରେ ମଧ୍ୟ ଭିନ୍ନ ଭିନ୍ନ ପ୍ରକାରର ପିଠାପଣା ତିଆରି ହେଉଥିଲା। ଝିଅମାନେ ଗିଲ ଖେଳିଥିଲେ। ଏବେ ଲୁଡୋ, କବାଡ଼ି ଓ ଶଢ ତିଆରି ଖେଳ ମଧ୍ୟ ଖେଳା ଯାଉଛି। ଅବିବାହିତ ଝିଅମାନେ 'କୁମାର ପୂର୍ଣ୍ଣିମା' ର ଗୀତ ବୋଲନ୍ତି ଏବଂ ବୋହୂଚୋରୀ ଆଦି ଖେଳ ଖେଳନ୍ତି। କୁମାର ପୂର୍ଣ୍ଣିମାର ଅନ୍ୟ ନାଁ କୁଆଁର ପୁନେଁଇ। ଝିଅମାନେ ଗୀତ ଗାଇଥାନ୍ତି 'କୁଆଁର ପୁନେଇ ଜହ୍ନଗୋ ଫୁଲ ବଉଳ ବେଣୀ'।

**IV. ओड़िआ में अनुवाद कीजिए।**

**मैं पिछले साल संबलपुर गई थी। वहाँ बहुत सारी साड़ी की दुकानें थीं। वहाँ सुंदर सुंदर पाट की साड़ियाँ देखी थीं। मैंने अपने लिए दो साड़ियाँ लाई थीं। मेरे सहेलिओं के लिए एक एक साड़ी लाई थी। वहाँ से कुछ परदों का कपड़ा भी मैंने खरीदा था। ये कपड़े मेरे भाई के नये घर केलिए हैं। मुझे नई जगह देखना बहुत पसंद है। पिछले साल अपने कुछ मित्रों के साथ हीराकुद देखने के लिए गई थी। वह मेरा एक अच्छा अनुभव था। आनेवाली छुट्टियों में मैं ओड़िशा के बाहर के जगहों को देखने केलिए जाऊँगी।**

**V. अपनी देखी हुई किसी शादी के बारे में ओड़िआ में एक छोटा अनुच्छेद लिखिए।**

## टिप्पणियाँ

**I.** **इस पाठ में निम्न प्रकार के वाक्यों का प्रयोग हुआ है :-**

1. ଗଲାବର୍ଷ ମୁଁ ବହୁତ ପିଠା କରିଥିଲି। **पिछले वर्ष मैं ने बहुत पिठा बनाई थीं।**

**गलाबर्ष मुँ बहुत पिठा करिथिलि।**

2. ସବିତା ! କୁଆଡ଼େ ଯାଇଥିଲକି ? **सविता ! कहाँ गई थी ?**

**सबिता! कुआड़े जाइथिलकि?**

3. ନାଇଁ ମୁଁ ବଜାରକୁ ଯାଇଥିଲି। **नहीं, मैं बाज़ार गई थी।**

**नाइँ मुँ बजारकु जाइथिलि।**

**उपर्युक्त वाक्यों में पूर्ण भूतकालिक क्रियाओं का प्रयोग हुआ है। ये हिंदी के 'किया था', 'गया था' जैसे प्रयोगों के समान हैं। मूल क्रिया के साथ पुरुष और वचन के अनुसार '-ଥିଲ' (-थिल), '-ଥିଲି' (-थिलि), '-ଥିଲା' (-थिला), '-ଥିଲେ' (-थिले) सहायक क्रियाएँ जोड़ने से पूर्ण भूतकाल की क्रियाएँ बनती हैं।**

**उत्तमपुरुष**

**एक वचन** ମୁଁ ଯାଇଥିଲି। **मैं गया था / गई थी।**

**मुँ जाइथिलि ।**

**बहुवचन** ଆମେ / ଆମେମାନେ ଯାଇଥିଲୁ । **हम / हमलोग गए थे/गई थीं।**

**आमे / आमेमाने जाइथिलु ।**

ଆମ୍ଭେ / ଆମ୍ଭେମାନେ ଯାଇଥିଲୁ । **हम / हमलोग गए थे/गई थीं।**

**आम्भे / आम्भेमाने जाइथिलु ।**

**मध्यमपुरुष**

**एकवचन** ତୁ ଯାଇଥିଲୁ । **तू गया था / गई थी।**

**तु जाइथिलु ।**

ତୁମେ / ତୁମ୍ଭେ ଯାଇଥିଲ । **तुम गए थे / गई थीं।**

**तुमे/ तुम्भे जाइथिल ।**

**बहुवचन** ତୁମେମାନେ / ତୁମ୍ଭେମାନେ ଯାଇଥିଲ । **तुमलोग गए थे / गई थीं।**
**तुमेमाने/ तुम्भेमाने जाइथिल ।**

ଆପଣ / ଆପଣମାନେ ଯାଇଥିଲେ । **आपलोग गए थे / गई थीं।**
**आपण/ आपणमाने जाइथिले ।**

**अन्यपुरुष**

**एकवचन** ସେ ଯାଇଥିଲା । **वह गया था / गई थी।**
**से जाइथिला ।**

**बहुवचन** ସେମାନେ ଯାଇଥିଲେ । **वे (लोग) गए थे / गई थीं।**
**सेमाने जाइथिले ।**

**(2) और (3) वाक्य यथाक्रम पूर्ण भूतकाल के प्रश्नार्थक और निषेधार्थक वाक्य हैं।**

**II.** **रज -**
**यह ओड़िशा के कृषि पर आधारित एक बड़ा त्योहार है। जून के महीने में संक्रांति के पूर्व एक दिन और अगले दो दिन यह त्योहार मनाया जाता है। उन दिनों लड़कियाँ घर में कुछ काम नहीं करतीं।**

पोड़पिठा **-**
**यह एक पकवान है। 'रज' के त्योहार पर ओड़िशा में लोग पोड़पिठा बनाकर रखते हैं। चावल, उड़द दाल, छेना, गुड़, नारियल और गरम मसाला डालकर यह पोड़पिठा बनाया जाता है।**

हातगांठि **-**
**यह शादी के धर्मक्रियाओं में एक प्रधान क्रिया है। शादि के वेदी के ऊपर अग्नि को साक्षी मान कर लड़की के हाथ के ऊपर लड़के का हाथ रख कर कुश से बाँधा जाता है। यह काम पुरोहित ही करते हैं। इस गांठ को 'हातगांठि' कहते हैं और लड़की की बहन इसे खोलती है। 'हातगांठि' खोलनेवाली लड़की को उपहार के रूप में दुल्हा कपड़ा या रुपए देते हैं।**

# ପାଠ
# पाठ 11

## ଗୋଟିଏ ଦୁର୍ଘଟଣା
## गोटिए दुर्घटणा

## एक दुर्घटना

ରମୁ : ହବିବ୍ ! ଗାଡ଼ି ଧୀରେ ଧୀରେ ଚଲା । ଆଗରେ ବସ୍‌ଟା କେତେ ଜୋରରେ ଆସୁଛି ଦେଖିଲୁ ! ମୋତେ ବହୁତ ଡ଼ର ଲାଗୁଛି ।

रमु : हबीब, गाड़ी धीरे-धीरे चलाओ। देख लो सामने कितनी तेजी से बस आ रही है! मुझे बहुत ड़र लग रहा है।

ହବିବ୍ : କହନା ଭାଇ । ଆଜିକାଲି ରାସ୍ତାରେ ଯେତେ ଭିଡ଼ ହେଉଛି ସେତେ ଦୁର୍ଘଟଣା ଘଟୁଛି । ମୋ ପାଖରେ ଦୁର୍ଘଟଣାର ଗୋଟିଏ ବଡ଼ ତାଲିକା ଅଛି ।

हबीब : मत बोलो भाई। आजकल रास्ते में जितनी भीड़ हो रही है, उतनी दुर्घटनाएँ भी हो रही हैं। मेरे पास दुर्घटनाओं की एक तालिका है।

ରମୁ : ତୁ ତ ରାଜମହଲ ଛକରେ ଦୁର୍ଘଟଣା କଥା ଶୁଣିନଥିବୁ । କ'ଣ ଶୁଣିଛୁ ?

रमु : तू ने तो राजमहल चौक की दुर्घटना के बारे में नहीं सुना होगा? क्या सुना है?

ହବିବ୍ : ନା, ଦୁର୍ଘଟଣା କେମିତି ହେଲା?

हबीब : नहीं। दुर्घटना कैसे हुई?

ରମୁ : ତୁମେ କ'ଣ ମୋ ପାଖରୁ ସେହି ବିଷୟରେ ଶୁଣିବାକୁ ଚାହୁଁଛ କି? ତେବେ ଶୁଣ । ଗୋଟିଏ ବସ୍ ଓ ଗୋଟିଏ ସ୍କୁଟର ବିପରୀତ ଦିଗରୁ ଆସୁଥିଲେ । ମୁହାଁ ମୁହିଁ ଧକ୍କା ହେଲା ।

रमु : क्या तुम मुझ से उस के बारे में सुनना चाहते हो? तब सुनो। एक बस और एक स्कूटर विपरीत दिशाओं से आ रहे थे। आपस में टक्कर हुई।

ହବିବ : ବହୁତ ଲୋକ ତ

हबीब : तो बहुत लोग मरे होंगे?

रमु : नहीं। बहुत लोग तो नहीं मरे होंगे। दो प्रौढ़ व्यक्ति और एक छोटा सा बच्चा दुर्घटना स्थल पर ही मर गए। मैंने ऐसा ही सुना था।

| | |
|---|---|
| ମରିଥିବେ ? | |
| ରମୁ : ନାଁ, ବହୁତ ଲୋକ ତ ମରି ନଥିବେ। ଦି' ଜଣ ବୟସ୍କ ଲୋକ ଓ ଗୋଟିଏ ଛୋଟ ପିଲା ଦୁର୍ଘଟଣା ସ୍ଥାନରେ ହିଁ ସଙ୍ଗେ ସଙ୍ଗେ ମରିଗଲେ। ମୁଁ ଏମିତି ହିଁ ଶୁଣିଥିଲି। | हबीब : ओह! कितना खून बहा होगा! बहुत से लोग ज़ख्मी भी हुए होंगे। |
| ହବିବ : ଆହା ! କେତେ ରକ୍ତ ବୋହିଥିବ! ଲୋକମାନେ ବି ବହୁତ ଖଣ୍ଡିଆ ଖାବରା ହୋଇଥିବେ। | रमु : यह बात और मत पूछो भाई। वह दृश्य बड़ा ही कारुणिक था। |
| ରମୁ : ସେ କଥା ଆଉ ପଚାରନା ଭାଇ। ସେ ଦୃଶ୍ୟ ଅତି କରୁଣ ଥିଲା। | हबीब : इन सब दुर्घटनाओं का प्रधान कारण है जनसंख्या वृद्धि। हमारी जनसंख्या जितनी बढेंगी उतनी ही समस्याएँ भी बढ़ेंगी। |
| ହବିବ୍ : ଏ ସବୁ ଦୁର୍ଘଟଣାର ପ୍ରଧାନ କାରଣ ହେଲା ଲୋକସଂଖ୍ୟା ବୃଦ୍ଧି। ଆମର ଜନସଂଖ୍ୟା ଯେତେ ବଢ଼ିବ ସେତେ ସମସ୍ୟା ମଧ୍ୟ ବଢ଼ିବ। | रमु : छोडो इस बात को। अच्छा तू तो कल कटक जाएगा। मेरे लिए एक जाकेट लाना। |
| ରମୁ : ଛାଡ଼ ସେ କଥା। ଆଚ୍ଛା, ତୁ ତ କାଲି କଟକ ଯିବୁ। ମୋ ପାଇଁ ଗୋଟେ ଜ୍ୟାକେଟ୍ ଆଣିଥିବୁ। | हबीब : तु भी मेरे साथ चल ना। |
| ହବିବ୍ : ତୁ ବି ମୋ ସାଙ୍ଗେ ଚାଲନା। | रमु : अच्छा। एक-साथ जाएँगे। |
| ରମୁ : ଆଚ୍ଛା ହଉ, ସାଙ୍ଗ ହୋଇ ଯିବା। | हबीब : अपना हेलमेट भी साथ लाना। हमारी रक्षा के बारे में हम जितना सोचेंगे उतना ही अच्छा होगा। |
| ହବିବ୍ : ତୋ ହେଲ୍‌ମେଟଟା ବି ସାଙ୍ଗରେ ନେଇଥିବୁ। ଆମକୁ ରକ୍ଷା କରିବା ବିଷୟରେ ଆମେ ଯେତେ ଭାବିବା ସେତେ ଭଲହେବ। | रमु : हाँ, सुन। तब तक मैं भाभी को फोन पर बताया होगा। उन्हों ने दोनों मित्रों को खाने केलिए रखा होगा। |
| ରମୁ : ହଁ, ଶୁଣ। ସେତେବେଳେ ମୁଁ | हबीब : तब तो खूब मज़ा आएगा। कल सुबह नौ बजे मैं तुम्हारा इंतज़ार करूँगा। तू मेरे साथ जरूर आएगा। साथ में गरम कपड़े भी लाएगा। वापस आते समय ठंड लगेगी। |

ଭାଉଜଙ୍କୁ ଫୋନରେ କହିଥିବି। ସେ ଆମ ଦୁଇଜଣ ସାଙ୍ଗଙ୍କ ପାଇଁ ଖାଇବାକୁ ରଖିଥିବେ।

ହବିବ୍ : ତେବେ ତ ଖୁବ୍ ମଜା ହେବ। କାଲି ସକାଳ ନଅଟାରେ ମୁଁ ତୋତେ ଅପେକ୍ଷା କରିବି। ତୁ ମୋ ସହିତ ନିଶ୍ଚୟ ଆସିବୁ। ସାଙ୍ଗରେ ଶୀତ ପୋଷାକ ମଧ୍ୟ ଆଣିବୁ। ଫେରିଲା ବେଳେ ଥଣ୍ଡା ଲାଗିବ।

ରମୁ : ମୋତେ ତ ଥଣ୍ଡା ପସନ୍ଦ। ଯେତେ ଥଣ୍ଡା ହେବ ମୋତେ ସେତେ ଭଲ ଲାଗିବ।

**रमु : मुझे तो ठंड़ ही पसंद है। जितना ठंड़ होगा मुझे उतना ही अच्छा लगेगा।**

## शब्दार्थ

| **ओड़िआ शब्द** | **हिंदी अर्थ** |
|---|---|
| ଗାଡ଼ି | **गाड़ी** |
| ଶୁଣିବାକୁ | **सुननेको** |
| ଚାହୁଁଛି | **चाहता हूँ** |
| ମୋତେ | **मुझे** |
| ବହୁତ ଡର | **बहुत डर** |
| ମୋ ପାଖରେ | **मेरे पास्** |
| ବଡ଼ ତାଲିକା | **बड़ी तालिका** |
| ଧୀରେ ଧୀରେ | **धीरे-धीरे** |
| ଚଲା | **चलाना** |
| କେତେ ଜୋରରେ | **कितनी ज़ोर से** |
| ଭିଡ଼ | **भीड़** |

| | |
|---|---|
| ଦୁର୍ଘଟଣା | **दुर्घटना** |
| ଶୁଣିଥିବୁ | **सुना होगा** |
| ବିପରୀତ ଦିଗରୁ | **विपरीत दिशाओं से** |
| ମୁହାଁ ମୁହିଁ | **आमने-सामने (आपस में)** |
| ଧକ୍କା | **टक्कर** |
| ଦି' ଜଣ | **दो आदमी** |
| ବୟସ୍କ ଲୋକ | **प्रौढ़ आदमी** |
| ଛୋଟ ପିଲା | **छोटा बच्चा** |
| ରକ୍ତ | **खून** |
| ବହିଥିବ | **बहा होगा** |
| ପ୍ରଧାନ | **प्रधान** |
| କାରଣ | **कारण** |
| ଲୋକ ସଂଖ୍ୟା | **लोकसंख्या/जनसंख्या** |
| ମଜାହେବ | **आनंद होगा/मज़ा आएगा** |
| ସକାଳ ନଅଟାରେ | **सुबह नौ बजे** |
| ଅପେକ୍ଷା କରିଥିବି | **इंतजार करूँगा** |
| ଥଣ୍ଡା ଲାଗିବ | **सर्दी लगेगी** |
| ମୋ ସହିତ | **मेरे साथ** |

## अभ्यास

**I. नीचे दिए गए वाक्य दोहराइए।**

1. ତୁ ତ ରାଜମହଲ ଛକରେ ଦୁର୍ଘଟଣା କଥା ଶୁଣି ନଥିବୁ।
2. ବହୁତ ଲୋକ ତ ମରିଥିବେ?
3. ଆହା ! କେତେ ରକ୍ତ ବୋହିଥିବ।
4. ମୋ ପାଇଁ ଗୋଟେ ଜ୍ୟାକେଟ ଆଣିଥିବୁ।

5. ମୁଁ ଭାଉଜଙ୍କୁ ଫୋନ୍ କରି କହିଥିବି ।
6. ସାଙ୍ଗରେ ଶୀତ ପୋଷାକ ମଧ୍ୟ ନେଇଥିବୁ ।
7. ଆଜିକାଲି ରାସ୍ତାରେ ଯେତେ ଭିଡ଼ ହେଉଛି ସେତେ ଦୁର୍ଘଟଣା ଘଟୁଛି ।
8. ଆମର ଜନସଂଖ୍ୟା ଯେତେ ବଢ଼ିବ ସେତେ ସମସ୍ୟା ମଧ୍ୟ ବଢ଼ିବ ।
9. ଆମକୁ ରକ୍ଷା କରିବା ବିଷୟରେ ଆମେ ଯେତେ ଭାବିବା ସେତେ ହିଁ ଭଲ ହେବ ।

## II. वाक्यों में रेखांकित शब्दों के स्थान पर दिए गए शब्दों का प्रयोग कर वाक्य बनाइए ।

1) ବହୁତ <u>ଲୋକ</u> ତ ମରିଥିବେ।

ବୁଢ଼ା
ସ୍ତ୍ରୀ ଲୋକ
ବିଦେଶୀ
ମଣିଷ
ପିଲା

2) କେତେ <u>ରକ୍ତ</u> ବହିଥିବ ।

ପାଣି
ରଙ୍ଗ
ତେଲ
ଦୁଧ
ରସ

3) ମୋ ପାଇଁ ଗୋଟେ <u>ଜ୍ୟାକେଟ</u> ଆଣିଥିବୁ।

ଶାଢ
.1
ଘାଘରା
କୋର୍ଟ
ସାର୍ଟ
ହାର

4) ମୁଁ <u>ଭାଉଜଙ୍କୁ</u> ଫୋନରେ କହିଥିବି।

ମା'ଙ୍କୁ
ବାପାଙ୍କୁ
ବଡ଼ ଭାଇଙ୍କୁ
ସାର୍‌ଙ୍କୁ
ଅଫିସର୍‌ଙ୍କୁ

5) ମୁଁ ତତେ ଅପେକ୍ଷା କରିଥିବି ।

କଲମ ଦେଇଥିବି ।

ଗାଳି ଦେଇଥିବି ।

ଭଲ ପାଇଥିବି ।

ଗପ କହିଥିବି ।

ଚିଠି ଦେଇଥିବି ।

**III. उदाहरण के अनुसार कोष्ठक में दिए गए शब्दों का सही स्थान पर प्रयोग कर वाक्यों का विस्तार कीजिए।**

**उदाहरण:-** ତୁ ତ ଶୁଣିଥିବୁ । (ଦୁର୍ଘଟଣା କଥା, ରାଜମହଲ ଛକରେ)

ତୁ ତ ରାଜମହଲ ଛକରେ ଦୁର୍ଘଟଣା କଥା ଶୁଣିଥିବୁ ।

1. ତୁ ତ ପିଇଥିବୁ । (ଚା', ଆସାମରେ )
2. ତୁ ତ ଜାଣିଥିବୁ। (ପୂଜାହେବା କଥା, ଆମ ଘରେ)
3. ତୁ ତ କହିଥିବୁ। (ନାଟକ ହେବା କଥା, କଲେଜରେ)
4. ତୁ ତ ଲେଖିଥିବୁ । (ନିହାରୀକା ପତ୍ରିକାରେ, ତାଜମହଲ କଥା)
5. ତୁ ତ ପଢ଼ିଥିବୁ । (ସୀତାଙ୍କ କଥା, ରାମାୟଣରେ)

**IV. कोष्ठक में दिए गए शब्दों में से उपयुक्त शब्द चुनकर वाक्य पूरे कजिए।**

(1) (ଫେରିଲା, ଦୁର୍ଘଟଣା, ଜୋରରେ, ପୋଷାକ, ସାଙ୍ଗରେ)

1. ଆଗରେ ବସ୍‌ଟା କେତେ _____ ଆସୁଛି ଦେଖିଲୁ ।
2. କାହା ସହିତ _____ ହେଲା ?
3. ତୁ ବି ମୋ _____ ଚାଲ ନା ।
4. ରାତିରେ _____ ବେଳେ ଥଣ୍ଡା ଲାଗିବ ।
5. ସାଙ୍ଗରେ ଶୀତ _____ ନେଇଥିବୁ ।

(2) (ସାଙ୍ଗେ ସାଙ୍ଗେ, ସାଙ୍ଗେ, ସାଙ୍ଗ, ସାଙ୍ଗରେ, ସାଙ୍ଗ)

1. ମୁଁ ତୋ _____ ଯିବି ।
2. ଆମେ _____ ହୋଇ କଟକ ଯିବା ।
3. ହବିବ୍ ତୋ ସାହିତ୍ୟ ବହିଟା _____ ଆଣିଥିବୁ ।

4. ରାକେଶ ରମେଶର ସବୁଠାରୁ ଭଲ _____ ।
5. ବଜାରରୁ ______ ଆସିବ ।

**V. उदाहरण के अनुसार दिए गए वाक्यों का परिवर्तन कीजिए।**

(1) **उदाहरण:-** ତୁ ଦୁର୍ଘଟଣା କଥା ଶୁଣିଥିବୁ ।
ତୁ ଦୁର୍ଘଟଣା କଥା ଶୁଣିବୁ ।

1. ତୁ ଜଗନ୍ନାଥଙ୍କ କଥା ଲେଖିଥିବୁ ।
2. ତୁମେ ବାହ୍ାଘର କଥା ଜାଣିଥିବ ।
3. ତୁମେମାନେ ବର୍ଷା କଥା ଶୁଣିଥିବ।
4. ଆପଣ ସିନେମା କଥା କହିଥିବେ।
5. ଆପଣମାନେ ରାମଙ୍କ କଥା ପଢ଼ିଥିବେ ।

(2) **उदाहरण:-** ସେ ଲିଙ୍ଗରାଜ ମନ୍ଦିର ଦେଖିଥିବେ ।
ସେ ଲିଙ୍ଗରାଜ ମନ୍ଦିର ଦେଖିଥିଲେ ।

1. ରୀତା ରଜରେ ପୋଡ଼ ପିଠା ଖାଇଥିବ ।
2. ଆପଣ ତାଜମହ୍ଲ ଦେଖିଥିବେ ।
3. ତୁମେ ଉପନ୍ୟାସକାର ଗୋପୀନାଥ ମହାନ୍ତିଙ୍କ ବିଷୟ୍ରେ ଶୁଣିଥିବ ।
4. ସେମାନେ ଓଡ଼ିଶାରେ ଚିଲିକା ହ୍ରଦ ଦେଖିଥିବେ ।
5. ପିଲାଟି କେତେବେଳୁ କାନ୍ଦିଥିବ ।

**VI. कोष्ठक में दिए गए शब्दों में से उपयुक्त शब्द चुनकर वाक्य पुरे कीजिए ।**

1. ତୁ କାଲି କଟକ _____ । (ଯାଇଥିବ, ଯାଇଥିବୁ)
2. ମୁଁ ତୁମ ଘରେ ପହ୍ଞି _____ । (ଥିବୁ, ଥିବି)
3. କେତେ ରକ୍ତ _____ । (ବୋହିଥିବୁ, ବୋହିଥିବ)
4. ତୁମେ ମୋ ବହି ସାଙ୍ଗରେ _____ । (ନେଇଥିବି, ନେଇଥିବ)
5. ମୁଁ ତୋତେ ଅପେକ୍ଷା _____ । (କରିଥିବି, କରିଥିବ)

**VII. 'क' विभाग के ओड़िआ वाक्यांशों का 'ख' विभाग के हिंदी वाक्यांशों से सही प्रकार मिलान कीजिए।**

**'क'** **'ख'**

| | |
|---|---|
| ଲେଖୁଥିଲା | **खा रहा था।** |
| ଖେଳିଥିଲା | **देखा होगा।** |
| ପିଉଥିବ | **खेला था।** |
| ଖାଉଥିଲା | **पढ रहा है।** |
| ଶୁଣିଛି | **लिख रहा था।** |
| ଦେଖୁଥିବ | **सुना है।** |
| ପଢୁଅଛି | **पी रहा होगा।** |

**VIII. उदाहरण के अनुसार कोष्ठक में दी गई मूल क्रियाओं के सही रूपों का प्रयोग कर वाक्य पूरे कीजिए।**

**उदाहरण:-** ବଗିଚାରେ କେତେ ଫୁଲ _____ । (ଫୁଟିବା)
ବଗିଚାରେ କେତେ ଫୁଲ ଫୁଟିଛି ।

1. ଫୁଲର ସବୁ ପାଖୁଡା _____ । (ମେଲିବା)
2. ତୁମେ ମତେ ଗପ ବହି _____ । (ଦେବା)
3. ରମା ଓଡ଼ିଆ ସିନେମା _____ । (ଦେଖିବା)
4. ବୋଉ ଗାଁରୁ _____ । (ଫେରିବା)
5. ଦେବୀ ନଈରେ ବନ୍ୟା _____ । (ଆସିବା)

**IX. उपयुक्त शब्दों का प्रयोग कर वाक्य पूरे कीजिए।**

1. ଯେତେ କଠିନ ପରିଶ୍ରମ କରିବା _____ ଭଲ ଫଳ ପାଇବା ।
2. ସେଇ ନର୍ତ୍ତକୀ _____ ଭଲ ନାଚିବ, ସେତେ ପ୍ରଶଂସା ଲୋକଙ୍କଠାରୁ ପାଇବ ।
3. ଆମକୁ ଯେତେ ଟଙ୍କା _____, ସେତେ ବ୍ୟାଙ୍କରୁ ନେବା ।
4. ଆଜି ବଗିଚାରେ ଯେତେ ଫୁଲ _____, ସେତେ ଫୁଲ ଶ୍ରୀଜଗନ୍ନାଥଙ୍କୁ ପୂଜା କରିବା ପାଇଁ ଦେଇଛୁ ।
5. ଲିଙ୍ଗରାଜ ମନ୍ଦିରରେ ଆଜି ବହୁତ ଭିଡ଼ _____ ।
6. ମୁଁ ମୋ ସାନଭାଇକୁ _____ ଭଲପାଏ ସେ ମଧ୍ୟ ମୋତେ _____ ଭଲପାଏ ।

## पढ़िए और समझिए

# ଭାରତର ଜନସଂଖ୍ୟା
## भारतर जनसंख्या

ଭାରତ ବିଜ୍ଞାନ ଏବଂ ପ୍ରଯୁକ୍ତି ବିଦ୍ୟା କ୍ଷେତ୍ରରେ ଏକ ଆଗୁଆ ଦେଶ ହୋଇଥିଲେ ମଧ୍ୟ ଜନସଂଖ୍ୟା ବୃଦ୍ଧି ଏହାର ସମୃଦ୍ଧି ପଥରେ ପ୍ରଧାନ ଅନ୍ତରାୟ ହୋଇ ଦେଖାଦେଇଛି। ଅହେତୁକ ଜନସଂଖ୍ୟା ବୃଦ୍ଧିକୁ ରୋକିବା ଏଯାଏ ସମ୍ଭବପର ହେଲା ନାହିଁ। ନିକଟରେ ଯୋଜନା କମିଶନରଙ୍କ ଜନସଂଖ୍ୟା ବିଶେଷଜ୍ଞଙ୍କ ଦ୍ୱାରା ଏ ସମ୍ପର୍କିତ ଏକ ଗୁରୁତ୍ୱପୂର୍ଣ୍ଣ ରିପୋର୍ଟ ପ୍ରକାଶ ପାଇଛି। ଯାହା ପ୍ରଣିଧାନ ଯୋଗ୍ୟ। ଏଥିରେ ଦର୍ଶାଯାଇଛି ଯେ, ଭାରତର ଜନସଂଖ୍ୟା ଶହେ କୋଟିରୁ ଉର୍ଦ୍ଧ୍ୱ। ଏହା ଭାରତ ଭଳି ବିକାଶଶୀଳ ରାଷ୍ଟ୍ରପାଇଁ ନିଶ୍ଚିତରେ ଏକ ସତର୍କ ଘଣ୍ଟି। ଭାରତ ବର୍ଷରେ ଜାତୀୟ ଜନସଂଖ୍ୟା ନିୟନ୍ତ୍ରଣ ଯୋଜନା କାର୍ଯ୍ୟକାରୀ ହେଉଛି ଓ ଏହାକୁ କାର୍ଯ୍ୟକାରୀ କରିବାରେ ଭାରତ ପୃଥିବୀରେ ପ୍ରଥମ ସ୍ଥାନ ଅଧିକାର କରିଛି। ୧୯୫୨ ମସିହାରେ ଏହି ନୀତି ଆରମ୍ଭ ହୋଇଥିଲା। ଏହା ଭିତରେ ଦୀର୍ଘ ୪୭ ବର୍ଷ ଅତିବାହିତ ହୋଇଯାଇଥିଲେ ମଧ୍ୟ ପୂର୍ଣ୍ଣ ଜନସଂଖ୍ୟା ନିୟନ୍ତ୍ରଣ ବିଫଳ ହୋଇଛି। ପ୍ରତିବର୍ଷ ଜନସଂଖ୍ୟା ବୃଦ୍ଧି ପାଉଛି। ଏପରି ବୃଦ୍ଧି ପାଇଲେ ଆଉ କେତେ ଦଶନ୍ଧି ପରେ ପ୍ରାୟ ୨୦୫୦ ମସିହା ବେଳକୁ ଏହା ବର୍ତ୍ତମାନ ପୃଥିବୀର ସବୁଠାରୁ ବେଶୀ ଜନସଂଖ୍ୟା ବିଶିଷ୍ଟ ରାଷ୍ଟ୍ରର ସ୍ଥାନ ଅଧିକାର କରିଥିବା ଚୀନ୍‌କୁ ଟପିଯିବ। ବିଶ୍ୱରେ ଜନସଂଖ୍ୟା ୩ ଗୁଣ ବୃଦ୍ଧି ପାଇଲା ବେଳେ କେବଳ ଭାରତରେ ଏହା ୫ ଗୁଣ ବୃଦ୍ଧି ପାଇଛି।

ଭାରତରେ ଜନସଂଖ୍ୟା ବଢ଼ିବା ସଙ୍ଗେ ସଙ୍ଗେ ବିଭିନ୍ନ ପ୍ରକାରର ସମସ୍ୟାମାନ ବଢ଼ିଯାଇଥାଏ। ଯେମିତି ବେକାର ସମସ୍ୟା, ଅଭାବ ଅନାଟନ, ମାରପିଟ୍, ଦଙ୍ଗା ହଙ୍ଗାମା ଆଉ ପରିବେଶ ପ୍ରଦୂଷଣ ବଢ଼ିଚାଲିଛି ସେମିତି ରାଜ୍ୟ ରାଜ୍ୟ ଭିତରେ ଘମାଘୋଟ ଯୁଦ୍ଧର ସୂତ୍ରପାତ ମଧ୍ୟ ହୋଇଥାଏ। ଜନସଂଖ୍ୟା ବିସ୍ଫୋରଣରୁ ମୁକ୍ତିପାଇବା ପାଇଁ ବିଭିନ୍ନ ରାଜ୍ୟର ସରକାର ବହୁତ କଠିନ ପରିଶ୍ରମ କରୁଛନ୍ତି। କିନ୍ତୁ ଲୋକମାନଙ୍କ ତରଫରୁ ଯେତେ ପରିଶ୍ରମ ହେବା ଦରକାର ସେତେ ହେଉନାହିଁ। ଯଦି ଏହି ପରିସ୍ଥିତି ଶତାବ୍ଦୀ ଶତାବ୍ଦୀ ଧରି ଚାଲେ ତେବେ ଜୀବଜଗତର ବିନାଶ ହୋଇଯିବ।

ସରକାର ଅଗ୍ରାଧିକାର ଭିତ୍ତିରେ ଜନସଂଖ୍ୟା ନିୟନ୍ତ୍ରଣ କରନ୍ତୁ। ଏହି ଲକ୍ଷ୍ୟ ହାସଲ ଦିଗରେ ଥିବା ମୁଖ୍ୟ ପ୍ରତିବନ୍ଧକ ସଚେତନତାର ଅଭାବକୁ ଦୂରେଇ ରଖନ୍ତୁ ନଚେତ୍ ନେଡ଼ିଗୁଡ଼ କହୁଣୀକୁ ଚାଲିଯିବ। ବିକାଶଶୀଳ ରାଷ୍ଟ୍ର ଭାରତ ଜନସଂଖ୍ୟା ଭାରରେ 'ଗୋଦରା କୋଡ଼େ ଯେତେ ମାଡ଼େ ସେତେ' ନୀତିରେ ସେହି ବିକାଶଶୀଳ ଅବସ୍ଥାରେ ହିଁ ରହିବ। ବିକଶିତ ହେବା ଆଶା ସ୍ୱପ୍ନରେ ରହିଯିବ। ଏମିତି ଗୋଟିକ ପରେ ଗୋଟିଏ ପଞ୍ଚବାର୍ଷିକ ଯୋଜନା

ଯାଉଥିବ କିନ୍ତୁ ଯୋଜନାର ସୁଫଳ ଜନସଂଖ୍ୟା ବୃଦ୍ଧି ଯୋଗୁଁ ଦେଶର ସାଧାରଣ ନାଗରିକ ପାଇବାରୁ ବଂଚିତ ହେଉଥିବେ ।

## शब्दार्थ

| ओड़िआ शब्द | हिंदी अर्थ |
|---|---|
| ଜନସଂଖ୍ୟା | जनसंख्या |
| ବିଜ୍ଞାନ | विज्ञान |
| ପ୍ରଯୁକ୍ତି ବିଦ୍ୟା | प्रयुक्ति बिद्या |
| ଆଗୁଆ ଦେଶ | आगे रहनेवाला देश |
| ସମୃଦ୍ଧି ପଥରେ | समृद्धि की पथमें |
| ପ୍ରଧାନ ଅନ୍ତରାୟ | प्रधान बाधा |
| ଅହେତୁକି | ज्यादा |
| ରୋକିବା | रोकना |
| ଯୋଜନା କମିଶନ | योजना कमिशन |
| ବିଶେଷଜ୍ଞ | विशेषज्ञ |
| ଗୁରୁତ୍ୱପୂର୍ଣ୍ଣ ରିପୋର୍ଟ | महत्वपूर्ण रिपोर्ट |
| ପ୍ରଣିଧାନ ଯୋଗ୍ୟ | ध्यान देने योग्य |
| ଦର୍ଶାଯାଇଛି | दर्शित हुआ है |
| ଆଗାମୀ | आनेवाला |
| ଊର୍ଦ୍ଧ୍ୱ | ऊर्द्ध्, ऊपर |
| ପହଂଚିଯିବ | पहुँचेगी |
| ବିକାଶଶୀଳ ରାଷ୍ଟ୍ର | विकासशील राष्ट्र |
| ସତର୍କ ଘଣ୍ଟି | सतर्क घंटा |
| ନିୟନ୍ତ୍ରଣ | नियंत्रण |
| କାର୍ଯ୍ୟକାରୀ | कार्यकारी |
| ନୀତି | नियमावली |

| | |
|---|---|
| ଅତିବାହିତ ହୋଇଯାଇଥିଲେ | **चला गया** |
| ଦଶନ୍ଧି ପରେ | **दशाब्दि के वाद** |
| ବେକାର ସମସ୍ୟା | **बेरोजगारी समस्या** |
| ଅଭାବ ଅନଟନ | **अभाव अनाटन** |
| ମାରପିଟ | **मार्‌पिट** |
| ଦଂଗା ହଂଗାମା | **दंगा हंगामा** |
| ପରିବେଶ ପ୍ରଦୂଷଣ | **परिवेश प्रदूषण** |
| ରାଜ୍ୟ ରାଜ୍ୟ ଭିତରେ | **राज्य राज्य के बीच में** |
| ଦେଶ ଦେଶ ଭିତରେ | **देश देश के बीच में** |
| ଘମାଘୋଟ ଯୁଦ୍ଧ | **घमासन लड़ाई** |
| ସୂତ୍ରପାତ | **सूत्रपात** |
| ବିସ୍ଫୋରଣ | **विस्फोटन** |
| ମୁକ୍ତି ପାଇବା ପାଇଁ | **मुक्ति पाने के लिए** |
| ଯେତେ ପରିଶ୍ରମ | **जितनी मेहनत** |
| ସେତେ ହେଉନାହିଁ | **उतना नहीं होती** |
| ପରିସ୍ଥିତି | **परिस्थिति** |
| ଶତାବ୍ଦୀ | **शताब्दि** |
| ଜୀବଜଗତ | **जीवजगत** |
| ବିନାଶ | **विनाश** |

## अभ्यास

**I. अनुच्छेद के आधार पर नीचे दिए गए प्रश्नों के उत्तर दीजिए।**

1. ଭାରତର ସମୃଦ୍ଧି ପଥରେ କ'ଣ ପ୍ରଧାନ ଅନ୍ତରାୟ ହୋଇ ଦେଖାଦେଇଛି ?
2. ଯୋଜନା କମିଶନରଙ୍କ ଜନସଂଖ୍ୟା ବିଶେଷଜ୍ଞ ଦ୍ୱାରା କି ପ୍ରକାର ରିପୋର୍ଟ ପ୍ରକାଶ ପାଇଛି?
3. କାହାପାଇଁ ସତର୍କ ଘଣ୍ଟିର ସୂଚନା ଦିଆଯାଇଛି ?

3. ଭାରତ ପୃଥିବୀରେ କ'ଣ ପାଇଁ ପ୍ରଥମ ସ୍ଥାନ ଅଧିକାର କରିଛି ?
4. ପ୍ରତିବର୍ଷ କେତେ ହାରରେ ଜନସଂଖ୍ୟା ବୃଦ୍ଧି ପାଉଛି ?
5. କିପରି ଭାବରେ ଜୀବଜଗତର ବିନାଶ ହୋଇଯିବ ?
6. ବିକାଶଶୀଳ ରାଷ୍ଟ୍ର ଭାରତ କେଉଁ ନୀତିରେ ସେହି ବିକାଶଶୀଳ ଅବସ୍ଥାରେ ହିଁ ରହିଯିବ ?

**II. अनुच्छेद के आधार पर नीचे दिए गए प्रत्येक शब्दों तथा वाक्यांशों के समूह को सही क्रम में रख कर वाक्य बनाइए।**

1. ଦେଖାଦେଇଛି, ପଥରେ, ପ୍ରଧାନ ଅନ୍ତରାୟ, ହୋଇ, ସମୃଦ୍ଧି ପଥରେ, ଜନସଂଖ୍ୟା ବୃଦ୍ଧି, ଏହାର, ଆଗୁଆ ଦେଶ ହୋଇଥିଲେ ମଧ୍ୟ, ବିଜ୍ଞାନ ଏବଂ, କ୍ଷେତ୍ରରେ ଏକ, ପ୍ରଯୁକ୍ତି ବିଦ୍ୟା, ଭାରତ
2. ଚୀନକୁ ଟପିଯିବ, ଏହା ବର୍ତ୍ତମାନ, ୨୦୫୦ ମସିହା ବେଳକୁ, ରାଷ୍ଟ୍ରର ସ୍ଥାନ, ପୃଥିବୀର ସବୁଠାରୁ ବେଶୀ, ଜନସଂଖ୍ୟା ବିଶିଷ୍ଟ, ଅଧିକାର କରିବ
3. ପରିବେଶ ପ୍ରଦୂଷଣ ଇତ୍ୟାଦି, ଯୁଦ୍ଧର ସୂତ୍ରପାତ ହୋଇଥାଏ, ଯେମିତି ବେକାର ସମସ୍ୟା, ଅଭାବ ଅନଟନ, ମାର୍‌ପିଟ୍, ଦଂଗା ଆଉ, ରାଜ୍ୟ ରାଜ୍ୟ ଭିତରେ ଘମାଘୋଟ, ସେମିତି
4. ଜୀବଜଗତର, ତେବେ, ଶତାବ୍ଦୀ ଶତାବ୍ଦୀ ଧରି, ବିନାଶ ହୋଇଯିବ, ଏହି ପରିସ୍ଥିତି, ଚାଲେ, ଯଦି
5. ଭାରତ, ଜନସଂଖ୍ୟା, ବିକାଶଶୀଳ ରାଷ୍ଟ୍ର, ନୀତିରେ, ସେହି ବିକାଶଶୀଳ, ଭାରରେ, ଗୋଦରା କୋଡ଼େ ଯେତେ ମାଡ଼େ ସେତେ, ଅବସ୍ଥାରେ ହିଁ ରହିବ

**III. हिंदी में अनुवाद कीजिए।**

ଆପଣମାନେ ଅଳ୍ପ ବହୁତ ଜାଣିଥିବେ, ଯାହା ଘଟେ ତାହା ଘଟଣା। ଯେଉଁ ଘଟଣା ଦୁର୍ଦ୍ଦଶା ଆଣେ ତାହା ଦୁର୍ଘଟଣା। ଗୋଟିଏ ନଇ ବହିଯାଉଛି। ବହୁତ ବର୍ଷା ହେଲା। ବନ୍ଧ ଭାଙ୍ଗିଲା, ଘର ଭାଙ୍ଗିଲା। ଲୋକ ମଲେ। ଗାଇ ଗୋରୁ ମଲେ। ଫସଲ ନଷ୍ଟ ହେଲା। ଏସବୁ ହେଉଛି ଦୁର୍ଘଟଣା।

ରାସ୍ତାରେ ଗାଡ଼ି ମଟର ଯାଉଛି। ଗୋଟିଏ ଗାଡ଼ି ସାମନାରୁ ଆସୁଛି। ମୁହାଁମୁହିଁ ଧକ୍କା ହେଲା। ଲୋକ ମଲେ। ଏହା ଦୁର୍ଘଟଣା। ରାସ୍ତାରେ ଗାଡ଼ିଯାଉଛି। ରାସ୍ତା କଡ଼ରେ ଲୋକ ବସିଛନ୍ତି। ଅଣାୟତ୍ତ ହୋଇ ଗାଡ଼ି ଉପରକୁ ଚଢ଼ିଗଲା। ଲୋକ ମଲେ। ଏହା ମଧ୍ୟ

ଦୁର୍ଘଟଣା ।

ପାହାଡ଼ି ରାସ୍ତା ତିଆରି ହେଉଚି । ଉପରୁ ପାହାଡ଼ ଧସିଲା । ରାସ୍ତାରେ କାମ କରୁଥିବା ଲୋକ ପୋତି ହୋଇଗଲେ । ଖଣିରେ କାମ ହେଉଥିବ । ହଠାତ୍ ବହୁତ ଜୋରରେ ପାଣି ବାହାରିଲା । ଲୋକେ କବାଟ ବନ୍ଦ କରି ରହିଲେ । ତାପରେ ଦୁର୍ଗନ୍ଧ ବାଷ୍ପ ବାହାରିଲା ଲୋକ ମରିଗଲେ । ଏହା ମଧ୍ୟ ଦୁର୍ଘଟଣା ।

ରାସ୍ତାରେ ଲୋକ ଯାଉଥିଲେ । ମେଘ ଘୋଡ଼େଇଥିଲା । ଝଡ଼ ତୋଫାନ ହେଲା । ଗଛ ପଡ଼ି ଲୋକ ମଲେ । ଘଡ଼ଘଡ଼ି ଚଡ଼ଚଡ଼ିରେ ଲୋକ ମଲେ । କୁଆପଥର ମାଡ଼ରେ ଲୋକ ମଲେ । ଏସବୁ ଦୁର୍ଘଟଣା ।

ଆଉ ବି ଶୁଣିଥିବେ, ଭାବି ନଥିବା ଘଟଣା ଦୁର୍ଘଟଣା । ସମୁଦ୍ରରେ ଲୋକ ଗାଧୋଉଛନ୍ତି । ହସ ଖୁସିରେ ପାଣି ଫୋପଡ଼ା ଫୋପଡ଼ି ହେଉଛନ୍ତି । ହଠାତ୍ ତଳେ ତଳେ ସୁଅ ବଦଳିଗଲା । ଜଣେ ଲୋକ ସୁଅରେ ଟାଣିହୋଇ ଭିତରକୁ ଚାଲିଗଲା । କେହି ଏପରି ହେବ ଭାବି ନଥିଲେ । ଏହା ଦୁର୍ଘଟଣା । ଆପଣମାନେ ଏବେ ଖବରକାଗଜରେ ଚୁନାମି ବିଷୟରେ ପଢ଼ିଥିବେ । ଗତ ଶହେ ବର୍ଷ ଭିତେର ଭାରତ ଉପକୂଳରେ ଚୁନାମି ହୋଇନଥିଲା । ହଠାତ୍ ଦେଖାଗଲା ସମୁଦ୍ର ପଛେଇ ପଛେଇ ଯାଉଛି । ମାଛମାନେ ଶୁଖିଲାରେ ଡ଼େଇଁଛନ୍ତି । ଯେଉଁମାନେ କ'ଣ ହେଉଛି ଦେଖିବାକୁ ଗଲେ କିମ୍ବା ମାଛ ଧରିବାକୁ ଗଲେ, ସେମାନେ ପନ୍ଦରଫୁଟ ଉଚ୍ଚର ପାଣି ଚାପରେ ମରିଗଲେ । କୂଳରେ ବହୁ ଘରଦ୍ୱାର ଭାଙ୍ଗିଗଲା । ହଜାର ହଜାର ଲୋକ ମଲେ । ଏସବୁ ତ ଦୁର୍ଘଟଣା ।

ସବୁ ଦୁର୍ଘଟଣାରେ ଯେ ଲୋକ ମରନ୍ତି, ତା ନୁହେଁ, ଯେଉଁମାନେ ବଞ୍ଚିଗଲେ ସେମାନେ ଅକ୍ଷମ ହୋଇଗଲେ । କାହାର ବାପ ମା' ମରିଛନ୍ତି ତ କାହାର ଭାଇଭଉଣୀ ମରିଛନ୍ତି । କାହାର ପୁଅ ଝିଅ ମରିଛନ୍ତି । କାହାର ଘରଦ୍ୱାର ଭାଙ୍ଗିଛିତ କାହାର ଜୀବନ ଯାପନର ସାଧନ ଚାଲିଯାଇଛି । ଦୁର୍ଘଟଣା ଦୁଖକଷ୍ଟ ଆଣେ ।

**IV. ओड़िआ में अनुवाद कीजिए ।**

**यह गंगा नदी है। तुमने तो गंगा नदी देखी होगी। नदी के किनारे काली के मंदिर में पूजा होगी। आजकल गंगा नदी का जल गंदा होता जा रहा है। अब तुम कलकत्ता जाओ। पशुओं की लाशें पड़ी होंगी। यह सिर्फ यहाँ की बात नहीं है। हिमालय से गंगा का उत्सव होता है। पर्वत प्रदेशों में गंगा पवित्र रहती है। गाँवों तथा नगरों में पहुँचती है तो वह अपवित्र हो जाती है। लोग ही उस का कारण होते हैं। गंदी चीज़ें उस के पानी में फेंकते हैं। भारत की सब नदियों की हालत यही है।**

**लाशें -** ମୃତଦେହ **(मृतदेह)**

**V.** **एक दुर्घटना से किसी को आप ने बचाया, उस के बारे में एक छोटा अनुच्छेद लिखिए।**

## टिप्पणियाँ

**I.** **इस पाठ में निम्न प्रकार के वाक्यों का प्रयोग हुआ है।**

1. ଆହା କେତେ ରକ୍ତ ବହିଥିବ ? — **आहा ! कितना खून बहाहोगा।**
**आहा ! केते रक्त बहिथिब ?**

2. ତୁ ତ ରାଜମହଲ ଛକର ଦୁର୍ଘଟଣା କଥା ଶୁଣିଥିବୁ। — **तु ने तो राजमहल चौंक की दुर्घटना के बारे में सुना होगा।**
**तु त राजमहल छकर दुर्घटणा कथा शुणिथिबु।**

3. ଲୋକମାନେ ବି ବହୁତ ଖଣ୍ଡିଆ ଖାବରା ହୋଇଥିବେ। — **बहुत से लोग ज़खमी भी हुए होंगे।**
**लोकमाने बि बहुत खंड़िआ खाबरा होइथिवे।**

4. ସେତେବେଳେ ମୁଁ ଭାଉଜଙ୍କୁ ଫୋନ୍‌ରେ କହିଥିବି। — **तब तक मैं भाभी को फोन पर बताया होगा।**
**सेतेवळे मुँ भाउजंकु फोनरे कहिथिबि।**

5. ସେ ଆମ ଦୁଇ ସାଙ୍ଗଙ୍କ ପାଇଁ ଖାଇବାକୁ ରଖିଥିବେ। — **उन्हों ने हम दोनों मित्रों को खाने केलिए रखा होगा।**
**से आम दुइ सांगंक पाइँ खाइबाकु रखिथिबे।**

6. ଆଜିକାଲି ରାସ୍ତାରେ ଯେତେ ଭିଡ଼ ହେଉଛି, ସେତେ ଦୁର୍ଘଟଣା ଘଟୁଛି। — **आजकल रास्ते में जितनी भीड़ हो रही है, उतनी दुर्घटनाएँ भी हो रही हैं।**
**आजिकालि रास्तारे जेते भिड़ हेउछि सेते दुर्घटणा घटुछि।**

7. ଆମର ଜନସଂଖ୍ୟା ଯେତେ ବଢ଼ିବ ସେତେ — **हमारी जनसंख्या जितनी बढ़ेगी,**

| | |
|---|---|
| ସମସ୍ୟା ବଢ଼ିବ । | उतनी ही समस्याएँ भी बढ़ेगी। |
| **आमर जनसंख्या जेते बढ़िब सेते समस्या बढ़िब।** | |

| | | |
|---|---|---|
| 8. | ଯେତେ ଥଣ୍ଡା ହେବ ମୋତେ ସେତେ ଭଲ ଲାଗିବ । | **जितना ठंड़ होगा मुझे उतना ही अच्छा लगेगा।** |
| | **जेते थंड़ा हेब मोते सेते भल लागिब।** | |

**उपर्युक्त (1) से (5) तक के क्रियारूप ओड़िआ के पूर्ण भविष्यतकालिक रूपों को दिखाते हें। हिंदी के समान ओड़िआ में भी पूर्णभविष्यतकालिक क्रियाएँ संभावना तथा साधारण पूर्णभविष्यत काल का बोध संदर्भानुसार कराती हैं।**

**उपर्युक्त (6) से (8) तक के वाक्य ओड़िआ के सहसंबध सूचक अव्यय शब्दों का प्रयोग दिखानेवाले वाक्य हैं। ये हिंदी के 'जितने'-'उतने' वाले वाक्यों के जेसे परिमाण का बोध कराते हैं।**

**ओड़िआ में क्रिया के पूर्ण भविष्यतकाल के रूप दिखाने के लिए मूल क्रिया के साथ** 'ଇଥିବି' **(-इथिबि), 'ଇଥିବୁ' (-इथिबु), 'ଇଥିବ' (-इथिब), 'ଇଥିବା' (इथिबा), और 'ଇଥିବେ' (-इथिबे) सहायक क्रियाओं का प्रयोग होता है। पुरुष और वचन के साथ क्रिया का रूप भी बदलता है।**

**जैसे:-** (ମୁଁ ) - ଯା + ଇଥିବି > ଯାଇଥିବି **मैं गया हूँगा/गई हूँगी।**

**(मुँ) - जा + इथिबि > जाइथिबि**

(ତୁମେ) - ଯା + ଇଥିବ > ଯାଇଥିବ **तुम गए होगे/गई होगी।**

**(तुमे) - जा + इथिब > जाइथिब**

(ସେ) - ଯା + ଇଥିବେ > ଯାଇଥିବେ **वे गए होंगे/गई होंगी**

**(से) - जा + इथिबे > जाइथिबे**

**उत्तमपुरुष**

| | | |
|---|---|---|
| **एकवचन** | ମୁଁ ଯାଇଥିବି । | **मैं गया हुँगा/ गई हुँगी।** |
| | **मुँ जाइथिबि।** | |
| **बहुवचन** | ଆମେ/ ଆମେମାନେ ଯାଇଥିବୁ । | **हम/हमलोग गए होंगे/ गई होंगी।** |
| | **आमे / आमेमाने जाइथिबु।** | |
| | ଆମ୍ଭେ / ଆମ୍ଭେମାନେ ଯାଇଥିବୁ । | |
| | **आम्भे / आम्भेमाने जाइथिबु।** | |

**मध्यम पुरुष**

| | | |
|---|---|---|
| **एकवचन** | ତୁ ଯାଇଥିବୁ ।<br>**तु जाइथिबु।** | **तू गया होगा/ गई होगी।** |
| | ତୁମେ/ ତୁମ୍ଭେ ଯାଇଥିବ ।<br>**तुमे / तुम्भे जाइथिब।** | **तुम गए होगे/ गई होगी।** |
| | ଆପଣ ଯାଇଥିବେ ।<br>**आपण जाइथिबे।** | **आप गए होंगे/ गई होंगी।** |
| **बहुवचन** | ତୁମେମାନେ / ତୁମ୍ଭେମାନେ ଯାଇଥିବ ।<br>**तुमेमाने/ तुम्भेमाने जाइथिब।** | **तुम लोग गए होंगे/ गई होंगी।** |
| **बहुवचन** | ଆପଣମାନେ ଯାଇଥିବେ ।<br>**आपणमाने जाइथिबे।** | **आपलोग गए होंगे/ गई होंगी।** |

**अन्यपुरुष**

| | | |
|---|---|---|
| **एकवचन** | ସେ ଯାଇଥିବ ।<br>**से जाइथिब।** | **वह गया होगा/ गई होगी।** |
| **बहुवचन** | ସେମାନେ ଯାଇଥିବେ ।<br>**सेमाने जाइथिबे।** | **वे लोग गए होंगे/ गई होंगी।** |

# ପାଠ 12
# पाठ

## ଜଙ୍ଗଲ ଆଉ ନଦୀର ଗପସପ
## जंगल आउ नदीर गपसप

ଜଙ୍ଗଲ : ନଦୀ, କୁଆଡେ ଏତେ ଜୋରରେ ଧାଇଁଛୁକି ? ତୁ ତ ଆଜି ଭାରି ସୁନ୍ଦର ଦିଶୁଛୁ । ତୋ ଦେହ ଖରାରେ ରୂପା ତାର ପରି ଚକ୍- ଚକ୍ କରୁଛି ।

ନଦୀ : ମୁଁ ତ ଏବେ ପାହାଡ଼ ଉପରୁ ଆସୁଛି । ମୋ ମନ ଆଜି ଭାରି ଖୁସି । ତମେ ତ କ'ଣ ମନ ମାରି ବସିଛ । କ'ଣ ହେଇଛି ?

ଜଙ୍ଗଲ : ସେ କଥା ଆଉ ପଚାରନା । କାଲିକା କଥା ଶୁଣ । କେଉଁଠୁ କେଜାଣି ଦଳେ ଲୋକ ଆସିଲେ ।

ନଦୀ : ସେମାନେ କ'ଣ କଲେ ?

ଜଙ୍ଗଲ : ସେମାନେ ବର, ଅଶ୍ୱତ୍‌ଥ, ମେହଗାନି, ରବର ଆଦି କେତେ ଗଛ ଭାଇଙ୍କୁ ମୋର କାଟି ପକେଇଥିଲେ । ଶେଷରେ ସମସ୍ତଙ୍କୁ ଏକାଠି ଟ୍ରକରେ ନେଇଗଲେ ।

ନଦୀ : ଆ ହା! ଇଏତ ବଡ଼ ଅନ୍ୟାୟ

## जंगल और नदी की बातचीत

जंगल : नदी, इतनी तेज़ी से कहाँ दौड़ रही हो? तुमतो आज बहुत सुंदर दिख रही हो। तेरा शरीर धूप से चाँदी के समान चमक रहा है।

नदी : मैं तो अभी पहाड़ों के ऊपर से आ रही हूँ। मेरा मन आज बहुत प्रसन्न है। तुमतो मन मार कर बैठी हो। क्या हुआ है?

जंगल : यह (बात) मत पूछो। कल की बात सुनो। न जाने कहाँ से बहुत सारे लोग आए थे।

नदी : उन्होंने क्या किया?

जंगल : उन्होंने वटबृक्ष, पीपल (अश्वत्थ), महॉगनी, रबर आदि मेरे बहुत सारे पेड़ भाइयों को काट दिया । अंत में सब को इकट्ठे कर ट्रक में ले गए।

नदी : ओ हो! यह तो बड़ा अन्याय हुआ।

जंगल : मुझे बहुत दुःख हो रहा है। वे अब पेड़ों को जला रहे होंगे।

ହେଲା ।

ଜଙ୍ଗଲ : ମତେ ଭାରି ଦୁଃଖ ଲାଗୁଛି । ଏବେ ସେମାନେ ଗଛ ଗୁଡ଼ିକୁ ଜାଳି ଦେଉଥିବେ ।

ନଦୀ : ହେଲେ ଗଛ ମାନଙ୍କଠୁଁ ସେଇ ଲୋକମାନେ ବହୁତ ଉପକାର ପାଉଥିଲେ । କ'ଣ ସେଇ ଉପକାର ସେମାନେ ଆଉ ଏବେ ପାଇବେ ?

ଜଙ୍ଗଲ : ସତରେ ନଦୀ, ଏଇ ଲୋକମାନେ ଭାରି ଅବୁଝା । ଆଚ୍ଛା, ଏବେ ତୋ କଥା କହ । ତୁ କ'ଣ ଏଇଠି ରହିଯିବୁ ନା କ'ଣ ? ଗାଁ ଆଡ଼କୁ ଯିବୁନି ?

ନଦୀ : ହଁ, ଭାବିଥିଲି ଆଉ ଆଗକୁ ଯିବି ନାହିଁ । ହେଲେ ମତେ ଯିବାକୁ ହିଁ ପଡ଼ିବ । ଗାଁ ଲୋକମାନେ ମୋତେ ଚାହିଁ ଥିବେ ଯେ !

ଜଙ୍ଗଲ : ହଁ, ଜଳତ ଜୀବନ । ତୋ ବିନା ସେମାନେ ଜୀଇଁବେ କେମିତି ? ତୋର ଯିବା ଉଚିତ୍ ।

ନଦୀ : ସେ କଥା ତ ସତ । ହେଲେ ଗାଁରେ ମୋ ପାଣି ଖରାପ ହୋଇ ଯାଉଛି । ଗାଁ ପାଖରେ ବଡ଼ ବଡ଼ କାରଖାନା ଅଛି । ତା'ର ମଇଳା ପାଣି ମୋ

**नदी** : **लेकिन वे लोग पेड़ों से बहुत लाभ पा रहे थे। क्या वही उपकार अब वे और पाएँगे?**

**जंगल** : **सच है नदी, ये लोग बड़े नासमझ हैं। अच्छा, तू अपनी बात कह। क्या तू यहीं रहेगी? गाँव की ओर नहीं जाएगी?**

**नदी** : **हाँ, सोच रही थी और आगे नहीं जाऊँगी। लेकिन मुझे तो जाना ही पड़ेगा। गाँव के लोग मेरी राह देख रहे होंगे।**

**जंगल** : **हाँ, जल तो जीवन है। वे लोग तेरे बिना कैसे जिएँगे? तेरा जाना उचित है।**

**नदी** : **यह तो सच है, परंतु गाँव में मेरा पानी गंदा हो रहा है। गाँव के पास बड़े-बड़े कारखाने हैं। उनका गंदा पानी मेरी काया (शरीर) में मिल रहा है।**

**जंगल** : **इसीलिए तो लोग आज-कल अनेक प्रकार के रोगों से झेल रहे हैं।**

**नदी** : **लेकिन अब से ऐसा नहीं होगा। गाँव के युवक बहुत अच्छा काम कर रहे हैं। पेड़ों द्वारा हमें बहुत लाभ और सुविधाएँ मिल रहे हैं। इन के बारे में लोगों को समझा रहे हैं।**

ଦେହରେ ମିଶୁଛି ।

ଜଙ୍ଗଲ : ସେଥିପାଇଁ ତ ଆଜିକାଲି ଲୋକମାନେ କେତେ ପ୍ରକାର ରୋଗ ଭୋଗୁଛନ୍ତି ।

ନଦୀ : ହେଲେ ଏବେ ଠାରୁ ଆଉ ସେମିତି ହେବନି । ଗାଁ ଯୁବକମାନେ ଭାରି ଭଲ କାମ କରୁଛନ୍ତି । ଗଛ ଦ୍ୱାରା ଲୋକଙ୍କୁ ବହୁତ ଲାଭ ଓ ସୁବିଧା ମିଳୁଛି । ଏହି ବିଷୟରେ ଲୋକମାନଙ୍କୁ ହିଁ ବୁଝାଉଛନ୍ତି ।

ଜଙ୍ଗଲ : ସତେ ନା କ'ଣ ?

ନଦୀ : ହଁ, ଗଛ ଭାଇମାନଙ୍କୁ ଆଉ ବି ସେମାନେ କାଟିବେ ନାହିଁ । ଆସନ୍ତା ସପ୍ତାହରେ ଗାଁର ଯୁବକମାନେ ଜଙ୍ଗଲକୁ ଆସିବେ । ଏଠି ସେମାନେ ନୂଆ ଗଛର ମଞ୍ଜି ସବୁ ପୋତିବେ ।

ଜଙ୍ଗଲ : ଆଚ୍ଛା !

ନଦୀ : ହଁ, ସେତେବେଳେ ତୁ ଦେଖିବୁ ବଣୁଆ ଫୁଲରେ ଜଙ୍ଗଲ କେମିତି ହସୁଥିବ । ଗଛର ଛାଇରେ ଥଣ୍ଡା ପବନ ଆସୁଥିବ । ଗଛଟି ଫୁଲ ଫଳରେ ଭରି ଯାଉଥିବ। ସଂଜ ବେଳକୁ ମନ୍ଦ ମଳୟ ଧୀରେ ଧୀରେ ବହୁଥିବ । ସେତେବେଳେ ତୋ ଦେହରେ ସବୁ ଘାଆ ଶୁଖି

**जंगल : अच्छा! सच है क्या ?**

**नदी : हाँ, पेड़भाइयों को भी वे (लोग) और नहीं काटेंगे। अगले सप्ताह गाँव के युवकलोग जंगल (में) आएँगे। यहाँ वे (लोग) नए पेड़ों के बीज रोपेंगे।**

**जंगल : अच्छा।**

**नदी : हाँ, तब तू देखेगा कि वन्य फूलों से जंगल कैसे हस रहा होगा। पेड़ों की छाया में ठंड़ी हवा आ रही होगी। पेड़ फल-फूल से भर गए होंगे। शाम के समय धीरे धीरे हवा बह रही होगी। तब तेरे शरीर के सब घाव भर जाएँगे। तू भी बहुत सुंदर दिखेगा।**

ଯାଇଥିବ । ତୁ ବି ବହୁତ
ସୁନ୍ଦର ଦିଶୁଥିବୁ ।

## शब्दार्थ

| **ओड़िआ शब्द** | **हिंदी अर्थ** |
|---|---|
| ଜଙ୍ଗଲ | **जंगल** |
| ନଦୀ | **नदी** |
| କୁଆଡେ | **कहाँ** |
| ଏତେ ଜୋରରେ | **इतनी तेज़ी से** |
| ଖରା | **धूप** |
| ରୂପା ତାର | **चाँदी की तार** |
| ଏବେ | **अब** |
| ଉପରୁ | **ऊपर से** |
| କେଉଁଠୁ କେଜାଣି | **न जाने कहाँ से** |
| ବର | **वटबृक्ष** |
| ଅଶ୍ୱତ୍ଥ | **पीपल/अश्वत्थ** |
| ମେହଗାନି | **महाँगनी वृक्ष** |
| ଏକାଠି | **इकट्ठा** |
| ନେଇ ଯାଇଥିଲେ | **ले गए थे** |
| ବଡ଼ | **बड़ा** |
| ଅନ୍ୟାୟ | **अन्याय** |
| ଭାରି | **बहुत** |
| ଦୁଃଖ | **दुःख** |
| ଜାଳିବା | **जलाना** |
| ହେଲେ | **लेकिन** |
| ଉପକାର | **उपकार/हित/लाभ** |

| | |
|---|---|
| ଅବୁଝା | **ना समझ** |
| ରହିଯିବୁ | **रहोगी** |
| ଗାଁ ଆଡ଼କୁ | **गाँव की ओर** |
| ଭାବୁଥିଲି | **सोच रही थी** |
| ମତେ | **मुझे** |
| ଜଳ | **जल/पानी** |
| ଜୀବନ | **जीवन** |
| ଖରାପ | **गंदा, बुरा, खराब** |
| କାରଖାନା | **कारखाना** |
| ଦେହ | **शरीर/काया** |
| ସେଥିପାଇଁ | **इसीलिए** |
| କେତେ ପ୍ରକାରର | **कितने प्रकार का** |
| ରୋଗ | **रोग** |
| ଭୋଗୁଛନ୍ତି | **भोग रहे हैं/झेल रहे हैं** |
| ଏବେଠାରୁ | **अब से** |
| ଯୁବକମାନେ | **युवक (लोग)** |
| ଭଲକାମ | **अच्छा काम** |
| ବୁଝଉଛନ୍ତି | **समझा रहे हैं** |
| ଗଛ | **पेड़** |
| କାଟିବେ | **काटेंगे** |
| ସପ୍ତାହ | **सप्ताह** |
| ବଣୁଆ ଫୁଲ | **वन्य फूल** |
| ମନ୍ଦ ମଳୟ | **मंद मलय** |
| ଲାଭ | **लाभ** |
| ସୁବିଧା | **सुविधा** |
| ଛାଇ | **छाया** |
| ଫଳ | **फल** |
| ଫୁଲ | **फूल** |
| ପତ୍ର | **पत्ता** |

| | |
|---|---|
| ଥଣ୍ଡାପବନ | **ठंड़ पवन** |
| ଦିଶୁଥିବୁ | **दिखोगी** |
| ଘାଆ | **घाव/ज़ख़्म** |
| ଶୁଖିଯାଇଥିବ | **भर गये होंगे** |

## अभ्यास

**I. नीचे दिए गए वाक्य दोहराइए।**

1. ନଦୀ, କୁଆଡ଼େ ଏତେ ଜୋରରେ ଧାଇଁଛୁ କି ?
2. ତମେ ତ କ'ଣ ମନ ମାରି ବସିଛୁ ।
3. ଏବେ ସେମାନେ ଗଛ ମାନଙ୍କୁ ଜାଳି ଦେଉଥିବେ ।
4. ଗଛ ମାନଙ୍କଠୁଁ ସେଇ ଲୋକମାନେ ବହୁତ ଉପକାର ପାଉଥିଲେ ।
5. କ'ଣ ସେଇ ଉପକାର ସେମାନେ ଆଉ ଏବେ ପାଇବେ ?
6. ଜଙ୍ଗଲ ଆଉ ନଦୀର ଗପସପ ଶୁଣିବାକୁ ବହୁତ ମଜ୍ଜା ଲାଗୁଥିଲା ।
7. ଜଳ ବିନା କେହି ବଂଚି ପାରିବେ ନାହିଁ ।
8. ଏବେ ତୋ କଥା କହ ।
9. ତୁ କ'ଣ ଏଇଠି ରହିଯିବୁ ନା କ'ଣ ?
10. ପୁରାତନ ଯୁଗରେ ଲୋକମାନେ ଗଛ ଏବଂ ନଦୀ ମାନଙ୍କର ପୂଜା କରୁଥିଲେ ।

**II. रेखांकित शब्दों के स्थान पर दिए गए शब्दों का प्रयोग कर वाक्य पूरे कीजिए।**

1) ନଦୀ, କୁଆଡ଼େ ଏତେ ଜୋରରେ କଳକଳ ନାଦରେ ଧାଇଁଛୁ କି ?

ଯାଉଛୁ କି ?

ବହୁଛୁ କି ?

ଗାଉଛୁ କି ?

ହସୁଛୁ କି ?

2) ମୁଁ ତ ଏବେ ପାହାଡ଼ ଉପରୁ ଆସୁଛି ।

ଦେଉଳ

ଚାଳ

ନଈ ବନ୍ଧ

କୋଠା

ଛାତ

3) କାଲିକା କଥା ଶୁଣ । 4) କେଉଁଠୁ କେଜାଣି ଦଳେଲୋକ ଆସିଥିଲେ ।

ଆଜିକା
ସେଦିନ
ଗଲାମାସ
ପଅର ଦିନ
ଗତ ବର୍ଷ

ଦଳେ ପିଲା
ପଝାଏ ଲୋକ
ପଲେ ଗାଈ
ଗୋଠେ ଛେଳି
ଦଳେ ଝିଅ

5) ଏବେ ସେମାନେ ଗଛ ଗୁଡ଼ିକୁ ଜାଳି ଦେଉଥିବେ । 6) ଏବେ ସେମାନେ ଗଛଗୁଡ଼ିକୁ ଜାଳି ଦେଉଥିବେ ।

ପତ୍ର
କାଠ
କୁଟା
ଘର
ଶବ

ଆମେମାନେ ଦେଉଥିବୁ
ତୁମେ ଦେଉଥିବ
ତୁ ଦେଉଥିବୁ
ସେ ଦେଉଥିବ
ଆପଣ ଦେଉଥିବ

7) ଗଛ ମାନଙ୍କଠୁଁ ସେମାନେ ବହୁତ ଉପକାର ପାଉଥିଲେ । 8) ଏହି ଲୋକମାନେ ଭାରି ଅବୁଝା ।

ଲାଭ
ସୁବିଧା
ଛାଇ
ଫଳ
ଫୁଲ

ପିଲା
ଝିଅ
ପୁଅ
ଯୁବକ
ଡାକ୍ତର

ପତ୍ର

ଥଣ୍ଡାପବନ

**III.** **उदाहरण के अनुसार कोष्ठक में दिए गए शब्दों का उचित स्थान पर प्रयोग कर वाक्यों का विस्तार कीजिए।**

**उदाहरण:-** ତୋ ଦେହ ଚିକ୍‌ଚିକ୍ କରୁଛି। (ରୁପା)
ତୋ ଦେହ ରୁପା ପରି ଚିକ୍‌ଚିକ୍ କରୁଛି।

1. ତୋ ଦେହ ଝିଲ୍‌ମିଲ୍ କରୁଛି। (ସୁନା)
2. ପରଦା ପବନରେ ଝଲମଲ କରୁଛି। (ପତ୍ର)
3. ତା ଆଖି ଧପ୍‌ଧପ୍ କରୁଛି। (ନିଆଁ)
4. ସେ ଆଖି ମିଟିମିଟି କରୁଛି। (ତାରା)

**IV.** **कोष्ठक में दिए गए हिंदी शब्दों के ओड़िआ समानार्थक शब्दों का प्रयोग कर वाक्य पूरे कीजिए।**

1. ତୁ' ତ ଆଜି ବହୁତ ସୁନ୍ଦର ______ । **(दिखते हो)**
2. ମୋ ମନ ଆଜି ଭାରି _____ । **(प्रसन्न)**
3. କେଉଁଠୁ କେଜାଣି _____ ଲୋକ ଆସିଲେ। **(बहुत सारे)**
4. ସମସ୍ତଙ୍କୁ _____ ଟ୍ରକରେ ନେଇ ଗଲେ। **(इकट्ठे)**
5. ଗାଁ ରେ ମୋ ପାଣି _____ ହୋଇ ଯାଉଛି। **(गंदा)**

**V.** **कोष्ठक में दिए गए शब्दों में से उपयुक्त शब्द चुनकर वाक्य बनाइए।**

(ଆଡ଼କୁ, ଗୁଡ଼ିକ, ଜୀବନ, ଅବୁଝା, ଉପରୁ)

1. ଗଛ _____ ଜାଳି ଦେଉଥିବେ।
2. ପାହାଡ଼ _____ ଆସୁଥିବେ।
3. ଲୋକମାନେ ଭାରି _____ ।
4. ଗାଁ _____ ଯିବୁନି।
5. ଜଳ ତ _____ ।

**VI.** **कोष्ठक में से उपयुक्त क्रिया रूपों का प्रयोग कर वाक्य पूरे कीजिए।**

1. ସେମାନେ କ'ଣ _____ ? (କଲି, କଲେ)
2. ସେମାନେ କେତେ ଗଛ ଭାଇଙ୍କୁ ମୋର କାଟି _____ । (ପକେଇଥିଲି, ପକେଇଥିଲେ)

3. ମତେ ଭାରି ଦୁଃଖ _____ । (ଲାଗୁଛନ୍ତି, ଲାଗୁଛି)
4. ତୁ କ'ଣ ଏଇଠି _____ ନା କ'ଣ ? (ରହିଯିବା, ରହିଯିବୁ)
5. ବଣୁଆ ଫୁଲର ଜଙ୍ଗଲ କେମିତି _____ । (ହସୁଥିବି, ହସୁଥିବ)

**VII. पाठ के अनुसार (क) और (ख) वर्गों के शब्दों का सही मिलान कीजिए।**

| (क) | (ख) |
|---|---|
| ଅନ୍ୟାୟ୍ | ଆସିଥିଲେ |
| ଲୋକମାନେ | ଲାଗୁଛି |
| ଦୁଃଖ | ପୋଡ଼ିବେ |
| ଗଛ | ବୋହୁଥିବ |
| ମନ୍ଦ ମଳୟ୍ | ହେଲା |

**VIII. उदाहरण के अनुसार दी गई प्रत्येक क्रिया के छह-छह वाक्य बनाइए।**

**उदाहरण:-** 1) ମୁଁ ଜଙ୍ଗଲ ଦେଖିଅଛି ।
ମୁଁ ଜଙ୍ଗଲ ଦେଖିଥିଲି ।
ମୁଁ ଜଙ୍ଗଲ ଦେଖିଥିବି ।
ମୁଁ ଜଙ୍ଗଲ ଦେଖୁଅଛି ।
ମୁଁ ଜଙ୍ଗଲ ଦେଖୁଥିଲି ।
ମୁଁ ଜଙ୍ଗଲ ଦେଖୁଥିବି ।

1. କହିବା
2. ଆଣିବା
3. ଦେବା
4. ପଢ଼ିବା
5. ପାଇବା

**IX. उदाहरण के अनुसार कोष्ठक में दिए गए प्रत्येक सर्वनाम के विविध रूपों से सात-सात वाक्य बनाइए।**

**उदाहरण:-**
1. ମୁଁ ଓଡ଼ିଆ ବିଦ୍ୟାର୍ଥୀ ।
2. ମୋର ବହି ଅଛି ।
3. ମୋତେ ଗୋଟିଏ ନୂଆ କଲମ ଦରକାର ।

4. ମୋ ପାଖରୁ ଏଇ ନୂଆ ବହିଟିକୁ ନିଅ।
5. ମୋ ପାଖରେ ପଇସା ନାହିଁ।
6. ମୋ ସହିତ ଘରକୁ ଆସ।
7. ମୋ ସାଙ୍ଗରେ ତମେ ଚାଲ।

(ତୁ, ତୁମେ, ଆପଣ, ସେ, ସେମାନେ)

**X. उदाहरण के अनुसार कोष्ठक में दिए गए क्रियाओं का प्रयोग सभी सर्वनामों के साथ अलग अलग वाक्यों में कीजिए।**

**उदाहरण:-**

1. ମୁଁ ପାଠ ପଢୁଛି।
2. ଆମେମାନେ ପାଠ ପଢୁ।
3. ତୁ ପାଠ ପଢୁଛୁ।
4. ତୁମେମାନେ ପାଠ ପଢ ୁଛ।
5. ଆପଣ ପାଠ ପଢୁଛନ୍ତି।।
6. ସେ ପାଠ ପଢୁଛି।

(ଲେଖିବା, ଶୁଣିବା, ଗାଇବା)

## पढ़िए और समझिए

### ବନ ଝରଣା

### बन झरणा

ମୁଁ ଏକ ବନ ଝରଣା। ଉଚ୍ଚ ପର୍ବତ ଗୁହାରେ ମୋ ଘର। ପାହାଡ଼କୁ କାଟି କାଟି ମୁଁ ବହି ଆସିଛି। ମୋର ଝରଝର ଶବ୍ଦ ଓ କଳକଳ ନାଦରେ ଆଖପାଖ ବହୁତ ଥଣ୍ଡା ଲାଗୁଥିଲା। କଳକଳ ଶବ୍ଦ ଗୀତର ଗୁଂଜନ ସୃଷ୍ଟି କରୁଥିଲା। ପତ୍ରର ଝଁଣ ଝଁଣ ଶବ୍ଦ ଓ ପକ୍ଷୀମାନଂକର କିଁଚିରି ମିଁଚିରି ଶବ୍ଦ ଏହି ପରିବେଶ ମୋତେ ବହୁତ ଆନନ୍ଦ ଦେଉଥିଲା। ଝରଣାର ଶୁଭ୍ର ଓ ସ୍ୱଚ୍ଛ ଜଳରେ ସବୁ ଅତିଥିଗଣ ଆସି ମନଖୁସିରେ ପାଣି ପିଉଥିଲେ। ସତରେ ମୁଁ କେତେ ପବିତ୍ର। କାହାରିପାଇଁ ମୋ ମନରେ ବାଛୁ ବିଚାର ନଥାଏ। ମୋ ଉପରେ ସମସ୍ତେ ପାଦ ଦେଇ ଚାଲନ୍ତି। ଗୋଡ଼ ଧୁଅନ୍ତି ଓ କୁଳୁକୁଚା ପାଣି ପକାନ୍ତି ହେଲେ ମୋ ମନରେ ଟିକିଏ ବୋଲି ଦୁଃଖ ନଥାଏ। ସବୁକୁ ଛାଡ଼ି ମୁଁ ଆଗକୁ ଆଗକୁ ବାହି ଚାଲିଥାଏ। ମୋ ଦେହରେ ଟପ୍ ଟପ୍ ବର୍ଷା ପଡୁଥାଏ। ମୋତେ ଖୁବ୍ ଆନନ୍ଦ ଦିଏ। ଶରତର ନିର୍ମଳ ଆକାଶରେ ଟୋପାଟୋପା କାକର ବିନ୍ଦୁରେ ମୁଁ ଭିଜିଯାଉଥିଲି। ବସନ୍ତ ଋତୁ ଆସିଲେ ମୋ ଚତୁଃପାର୍ଶ୍ୱରେ ବିଭିନ୍ନ ପ୍ରକାର ଫୁଲ ଭରି ଯାଉଥିବ ଓ ଚାରିଆଡ଼େ ସବୁଜିମାରେ ପରିପୂର୍ଣ୍ଣ ହୋଇଯାଉଥିବ। ସେତେବେଳେ ମୁଁ ଖୁବ୍ ସୁନ୍ଦର ଦେଖାଯାଉଥିବି। ସେହି ସମୟରେ ମୋ ପାଖକୁ କେତେ ପ୍ରକାରର ଚଢ଼େଇ ଆସି ପାଣି ପିଉଥିବେ ଏବଂ

ଫୁଲରୁ ମହୁନେବାପାଇଁ ମଧୁମକ୍ଷିକାମାନଙ୍କର ଭିଡ଼ ହେଉଥିବ। ମଧୁମକ୍ଷିକାମାନଙ୍କର ଗୁଣୁଗୁଣୁ ଶବ୍ଦ ଓ ମୋର ଝରଝର ଶବ୍ଦରେ ଚାରିଆଡ଼େ ଧ୍ୱନିର ପ୍ରକମ୍ପନ ହୋଇ ଯାଉଥିବ। ସେତେବେଳେ ମୁଁ କେତେ ସୁନ୍ଦର ଦିଶୁଥିବି ସତରେ !

## शब्दार्थ

| ओड़िआ शब्द | हिंदी अर्थ |
|---|---|
| ବନ ଝରଣା | वन झरना/वन्य झरना |
| ଉଚ୍ଚ ପର୍ବତ | ऊँचे पर्वत |
| ଘର | घर् |
| ନାଁ | नाम् |
| ପାହାଡ଼ | पहाड़ |
| ହଠାତ୍ | हठात् |
| କୁଳୁକୁଚା | कुला, कुल्लि |
| ଦୁଃଖ | उदास्, दुःखी |
| ଘନ | घना |
| ବାଦଲ | बादल |
| ମେଘ | मेघ |
| ଘୋଟି ଆସିଚ୍ଛି | छा गया है |
| ଥଣ୍ଡା | ठंड |
| ବହୁଥିଲା | बह रहा था |
| ଟପ୍ ଟପ୍ | टप् टप् |
| ବର୍ଷା | बारिश |
| ଗୁଂଜନ | गुंजन |
| କଳ କଳ | कल-कल (ध्वनि) |
| ଧ୍ୱନି | ध्वनि |
| ଶୁଭ୍ର | सफेद |

| | |
|---|---|
| ନିର୍ମଳ ଆକାଶ | **निर्मल आकाश** |
| ଟୋପା ଟୋପା | **बूँद-बूँद** |
| କାକର ବିନ୍ଦୁ | **ओस की बूँद** |
| ଫୁଲ | **फूल** |
| ମହୁ | **मधु** |
| ସୃଷ୍ଟି | **सृष्टि** |
| ଶରତ | **शरत् ऋतु** |
| ନିର୍ମଳ | **निर्मल** |
| ବସନ୍ତ | **वसंत** |
| ପବିତ୍ର | **पवित्र** |
| ଅଞ୍ଚଳ | **आँचल** |
| ପ୍ରକମ୍ପନ | **कंपन** |
| ଭରିଦେବ | **भर देगा** |

## अभ्यास

**I. अनुच्छेद के अनुसार नीचे दिए गए प्रश्नों के उत्तर लिखिए।**

1. ବନ ଝରଣାର ଘର କେଉଁଠି ?
2. ଝରଣା କଳକଳ ଶବ୍ଦରେ କ'ଣ ସୃଷ୍ଟି କରୁଥିଲା ?
3. ଝରଣାକୁ କି ପ୍ରକାର ଶବ୍ଦ ପାଇ ଆନନ୍ଦ ଦେଉଥିଲା ?
4. ବସନ୍ତ ଋତୁ ଆସିଲେ କ'ଣ ଭରିଦେବ ?
5. କେଉଁ ସମୟରେ ଚଢ଼େଇ ଓ ମଧୁମକ୍ଷୀକାମାନଙ୍କର ଭିଡ଼ ହେଉଥିବ ?
6. କାହାର ଧ୍ୱନିରେ ଚାରିଆଡ଼େ ପ୍ରକମ୍ପନ ହେଉଥିବ ?

**II. नीचे दिए गए शब्द-समूहों में से अनुपयुक्त शब्द बताइए।**

1. ସେ, ଇଏ, ମୁଁ, ତୁମେ, ପଢ଼
2. ଅଙ୍କ, ବଉଳ, ମାଳତୀ, ଗଙ୍ଗଶିଉଳୀ, ଗୋଲାପ
3. ମେଘ, ଘଡ଼ଘଡ଼ି, ବର୍ଷା, ବାଦଲ
4. ଝରଣା, କାକର, ପର୍ବତ, ଗୁହା, ବଉଳ

5. ଦେଖିଲି, ଦୌଡ଼ିଲି, ଖୋଜୁଥିଲି, ଛୁଆଇପଲ, ବହୁଥିଲା

**III. 'क' तथा 'ख' वर्गों के शब्दों का सही मिलान कीजिए।**

| **'क'** | **'ख'** |
|---|---|
| ବନ | ବାଦଲ |
| ଘଡ଼ଘଡ଼ି | ଗୀତ |
| ଟପ୍‌ଟପ୍ | ଗୁହା |
| କଳକଳ | କାକର |
| ଟୋପା ଟୋପା | ଝରଣା |
| ପର୍ବତ | ବର୍ଷା |
| ନିର୍ମଳ | ଶବ୍ଦ |
| ଘନ | ଆକାଶ |

**IV. हिंदी में अनुवाद कीजिए।**

ପରିବେଶ ସଚେତନତା ଆଧୁନିକତାର ଚିହ୍ନ। ପରିବେଶ କହିଲେ ଖାଲି ଜଙ୍ଗଲ, ପାଣି, କିମ୍ବା ପାଗ ବୁଝାଏ ନାହିଁ। ଚାରିପାଖରେ ଥିବା ବସତି ଓ ଲୋକ ମଧ୍ୟ ପରିବେଶରେ ଗଣାହେବା ଉଚିତ୍। ଆମ ଚାରିପାଖରେ ଲୋକ ଯଦି ରାସ୍ତାକଡ଼ରେ ଝାଡ଼ା ବସନ୍ତି, ପରିସ୍ରା କରନ୍ତି, ଘରେ କିମ୍ବା ଅଫିସ୍‌ରେ ପାନ ପିକ ପକାନ୍ତି, ତାହା ମଧ୍ୟ ପରିବେଶ ପ୍ରଦୂଷଣ। ଲୋକ ଯେତେ ବଢ଼ନ୍ତି ମୁଣ୍ଡ ଗୁଞ୍ଜିବା ଜାଗା ସେତିକି କମିଯାଏ। ଚାଷ ଜମି ସାନ ସାନ ଖଣ୍ଡରେ ବିଭକ୍ତ ହୋଇଯାଏ। କାମ କିମ୍ବା ଚାକିରୀ ମିଳିବା ଏକ ପ୍ରକାର ଅସମ୍ଭବ ହୋଇଯାଏ। ଗରୀବ, ନିରକ୍ଷରତା ଓ ଅଶିକ୍ଷିତତା ବଢେ।

ଘର କରିବା ଏବଂ ଜାଳେଣି କାଠ ପାଇଁ ଗଛକଟା ହୁଏ। ଗଛ ବାନ୍ଧି ରଖିଥିବା ମାଟି ଧୋଇ ହୋଇଯାଏ। ଜଙ୍ଗଲ ଥିବାରୁ ବର୍ଷା ହୁଏ। ଜଙ୍ଗଲ କଟା ହେବାରୁ ବର୍ଷା କମି କମି କ୍ରମେ ମରୁଡ଼ି ଆସେ। ଖରା ତାତି ବଢ଼େ। ପାଗ ବଦଳେ।

ନଈରେ ବନ୍ଧ ହେବାରୁ ନଈ କ୍ରମେ ଶୁଖି ଶୁଖି ଆସେ। ନଈ କୂଳରେ କଳ କାରଖାନା ହେବାରୁ ଏହାର ଦୂଷିତ ପାଣି ନଈରେ ମିଶି ଏହାକୁ ଦୂଷିତ କରେ। କାଳୀ ନଈ ଏହାର ଏକ ଉଦାହରଣ। ଏହି ନଈରେ ସପ୍ତମ ବନ୍ଧ କରିବା ଯୋଜନା ହେଉଛି। ନଈ କୂଳରେ ଥିବା ଗୋଟିଏ କାଗଜ କଳରୁ ପ୍ରଦୂଷିତ ପାଣି ପଡୁଥିବାରୁ ଏହା ନଈକୂଳ ବାସିନ୍ଦା ମାନଙ୍କ ପାଇଁ କାଳ ହୋଇଛି। ଏହ ପ୍ରଦୂଷଣ ଫଳରେ ଖାଲି ଭୂଇଁ ଉପର ନୁହେଁ, ଭୂଇଁ

ତଳ ପାଣି ମଧ୍ୟ ପ୍ରଦୂଷିତ ହେଉଛି ।

ରାଜାମାନେ ଆପଣା ପ୍ରଶସ୍ତି ପାଇଁ ଯେଉଁ ଶିଳାଲେଖ ନିର୍ମାଣ କରିଥିଲେ, ତହିଁରେ ସିଏ କେତେ କୂଅ ପୋଖରୀ, ଓ କେତେ ଜଳାଶୟ ତିଆରି କରିଛନ୍ତି ଏହାର ହିସାବ ଦେଇଥାନ୍ତି ।

ଏବେ କୂଅ, ପୋଖରୀ ପୋତି ହୋଇଯାଇଛି । ନଈ ପୋତି ସେଠି ଘର ତିଆରି କରା ଯାଉଛି । ମହାନଦୀ ବିହାର, ଗଙ୍ଗା ବିହାର ଆଦି ଏହାର ଉଦାହରଣ । ପାଣି କଥା କାହିଁରି ମନକୁ ଆସେ ନାହିଁ । ମନେ ରଖିବାକୁ ହେବ ଯେ, ପୃଥିବୀର ଜଳ ସମ୍ପଦର ଶତକଡ଼ା ୯୮ ଭାଗ ବରଫ ତଳେ ଅଛି । ମାତ୍ର ଦୁଇଭାଗ ଆମ ବ୍ୟବହାରରେ ଲାଗୁଛି । ଏଇ ଦୁଇଭାଗ ପାଇଁ ପୃଥିବୀରେ ମରାହଣା ଲାଗିଛି । ଲୋକସଂଖ୍ୟା ବୃଦ୍ଧି ସମସ୍ୟାକୁ ଆହୁରି ଜଟିଳ କରିଦେଇଛି ।

**V.** **ओड़िआ में अनुवाद कीजिए।**

**इंदिरा पार्क राउरकेला में स्थित है। बहुत दिन पहले उस पार्क का निर्माण हुआ है। अब वसंत ऋतु आई है। वहाँ कितने फूल खिल रहे होंगे। क्या तुम वहाँ जाना चाहोगे? वहाँ गुलाब के फूलों का बगीचा है। वहाँ हज़ारों किस्म के गुलाब के पौधे हैं। वहाँ एक चिड़िया घर भी है। तुम कल वहाँ जाओ। वहाँ लाल, पीले, काले, हरे, नीले आदि कितने रंगों के गुलाब खिल रहे होंगे। आस-पास के स्कूलों के बच्चे वहाँ घूमने आते हैं। सुबह सवेरे वृद्धजन भी आते होंगे। ऑफिस के लोग छुट्टी के दिन वहाँ घूमने जाते होंगे और आनंद ले रहे होंगे। इस पार्क की देखभाल आसपास के सब लोग करते होंगे। पड़ोसियों को इस पार्क की निगरानी करनी ही चाहिए न?**

**VI.** **अपने द्वारा देखे गए किसी चिड़िया घर या बगीचे के बारे में एक अनुच्छेद लिखिए।**

**VII.** **ओड़िआ ऋतुओं के नाम**

| | |
|---|---|
| ଋତୁ- | **मौसम/ऋतु** |
| ଗ୍ରୀଷ୍ମ- | **ग्रीष्म** |
| ବର୍ଷା- | **वर्षा** |
| ଶରତ- | **शरत** |
| ହେମନ୍ତ- | **हेमंत** |
| ଶୀତ - | **शीत** |
| ବସନ୍ତ- | **वसंत** |

# ପାଠ 13
# पाठ

## ଅବସର ନେଲାପରେ
## अबसर नेलापरे

ଶରତ : ମାଧବ ବାବୁ ! ଆପଣ କ'ଣ ଧାନ କଟା ଛୁଟିରେ ଗାଁକୁ ଯାଉଛନ୍ତି ?

ମାଧବ : ନାଁ, ମୁଁ ଗାଁକୁ ଯାଇ ପାରୁନି । କାରଣ ମୁଁ ଏଥର ବଡ଼ ପୁଅ ଘରକୁ ଭୋପାଳ ଯାଉଛି ।

ଶରତ : ଆପଣ ଅଳ୍ପ ଦିନ ତଳେ ତ ଯାଇଥିଲେ । ଆପଣଙ୍କୁ ଏଠି କ'ଣ ଭଲ ଲାଗୁନି ?

ମାଧବ : ଅବସର ନେଲା ପରେ ଏବେ ଏଠି ଭଲ ଲାଗୁନି । ତମ ଭାଉଜ ତ ମତେ ଛାଡ଼ି ଚାଲିଗଲେ । ଆଗରୁ ସବୁ କାମ ନିଜ ହାତରେ କରି ପାରୁଥିଲି । ହେଲେ ଆଜିକାଲି ଆଉ ପାରୁନି ।

ଶରତ : ହେଲେ ଥରକୁ ଥର ଏମିତି ରେଳ ଯାତ୍ରା କଲେ ଆପଣଙ୍କ ଦେହ କ'ଣ ସହିପାରିବ ?

ମାଧବ: ଯେତେ ଦିନ ମୁଁ ଯାଇପାରୁଥିବି ଯାଉଥିବି । ଏଥର ମୋ ବୋହୂ ମୋ ସାଙ୍ଗରେ ଆସି ପାରନ୍ତି ।

## अवकाश लेने के बाद

शरत : माधव बाबु ! क्या आप 'धानकटाई' की छुट्टी में गाँव (को) जा रहे हैं?

माधव : नहीं, मैं गाँव (को) नहीं जा सकता। क्यों कि मैं इस बार अपने बड़े बेटे के घर भोपाल जा रहा हूँ।

शरत : आप तो कुछ दिन पहले गए थे। क्या आप को यहाँ अच्छा नहीं लगता?

माधव : अवकाश लेने के बाद अब यहाँ अच्छा नहीं लगता। तुम्हारी भाभी तो मुझे छोड़ कर चली गई (मर गयी) ! मैं पहले सब काम अपने हाथों से कर सकता था। परंतु आजकल और नहीं कर सकता।

शरत : इसतरह बार-बार रेल यात्रा करना, क्या आप का शरीर सह सकेगा?

माधव : जितने दिन मैं जा सकूँगा जाता रहुँगा। इस बार मेरी पुत्रवधु (बहू) मेरे साथ आ सकती है। पोती (नातिन) भी आ सकती है।

शरत : तब तो आपको कोइ भी समस्या नहीं होगी। आप अच्छी तरह खा-पी

ନାତୁଣୀଟା ବି ଆସିପାରେ ।

ଶରତ : ତେବେ ଆପଣଙ୍କର ଆଉ କୌଣସି ଅସୁବିଧା ହେବନି । ଆପଣ ଭଲରେ ଖାଇ ପାରିବେ ।

ମାଧବ: ହୁଁ ସେ କଥା ସତ ।

ଶରତ : ନାତୁଣୀ କେତୁଟିଏ ହେଲାଣି? ସେ କ'ଣ କଥା କହିପାରୁଛି ?

ମାଧବ: ମୋ ନାତୁଣୀଟି ଗୋଟିଏ ଚାଉଳରେ ଗଢ଼ା । ଭାରି ସୁନ୍ଦର କଥା ବି କହିପାରୁଛି । ତା'ର ଗୁଲୁ ଗୁଲୁ କଥା ମତେ ଶୁଣିବାକୁ ଭାରି ଭଲଲାଗେ । ସେତେବେଳେ ସେ ଠୁକୁ ଠୁକୁ ଚାଲୁଥିଲା । ଏବେ ତ ଦୌଡ଼ି ପାରୁଥିବ ।

ଶରତ : ଆପଣଙ୍କ ସାନ ପୁଅର ଡାକ୍ତରୀ ପାଠ କ'ଣ ଶେଷ ହେଲାଣିକି?

ମାଧବ: ନାଇଁ, ଏବେତ ତା'ର ଚତୁର୍ଥ ବର୍ଷ ଚାଲିଛି । ଆଉ ବର୍ଷେ ପରେ ପରୀକ୍ଷା ସରି ଯାଇଥିବ । ତା' ପରେ ସେ ଅଧିକ ପଢ଼ିବାକୁ ଆମେରିକା ଯାଇପାରେ ।

ଶରତ : ଆପଣ ଖୁବ୍ ଭାଗ୍ୟବାନ ମାଧବ ବାବୁ । ଦୁଇଟି ଯାକ ପୁଅ ଲାଗି ସାରିଛନ୍ତି । ଏଥର ଆପଣ ନିଶ୍ଚିନ୍ତରେ ମହାପ୍ରଭୁ ଜଗନ୍ନାଥଙ୍କ ନାମ ନେଇ ଶାନ୍ତିରେ ବଂଚି

**सकेंगे।**

**माधव : हाँ, यह तो (सच) है।**

**शरत : पोती (नातिन) अब कितनी (बड़ी) हो गई है? क्या वह बात कर सकती है?**

**माधव : मेरी पोती एक चावल-दाने सी (बहुत सुघड़) है। बहुत अच्छी तरह बात भी कर सकती है। उस की तुतली बातें सुनना मुझे बहुत अच्छा लगता है। तब वह ठुमक-ठुमक चलती थी। अब तो दौड़ सकती होगी।**

**शरत : क्या, आपके छोटे लड़के की डॉक्टरी की पढ़ाई खत्म हो गयी है?**

**माधव : नहीं, अभी तो उस का चतुर्थ वर्ष चल रहा है। और एक वर्ष के बाद परीक्षा खत्म हुई होगी।उसके बाद वह आगे पढ़ने के लिए अमेरिका जा सकता है।**

**शरत : माधव बाबु, आप बहुत भाग्यवान हैं। आप के दोनों पुत्र काम पर लग गए हैं। अब से आप निश्चिंत होकर महाप्रभू जगन्नाथ का नाम ले कर शांति से जी सकते हैं।**

ପାରିବେ ।

## शब्दार्थ

| ओड़िआ शब्द | हिंदी अर्थ |
|---|---|
| ଧାନକଟା ଛୁଟି | धान-कटाई की छुट्टी |
| ଯାଇପାରୁନି | नहीं जा सकता |
| ବଡ଼ପୁଅ | बड़ा बेटा |
| ଯାଇପାରେ | जा सकता हूँ |
| ଅବସର | अवकाश/सेवानिवृत्ति |
| ଛାଡ଼ି ଚାଲିଗଲେ | मर गई/छोड़कर गई |
| କରି ପାରୁଥିଲି | कर सकता था |
| ଥରକୁ ଥର | बार-बार |
| ବୋହୂ | बहू (पुत्रवधु) |
| ନାତୁଣୀ | पोती |
| ଅସୁବିଧା | समस्या, असुविधा |
| କେଡୁଟିଏ | कितनी बड़ी |
| ଗୁଲୁ ଗୁଲୁ କଥା | तुतली बातें |
| ଠୁକୁ ଠୁକୁ ଚାଲି | ठुमक-ठुमक चलना |
| ଦୌଡ଼ି ପାରୁଥିବ | दौड़ सकती होगी |
| ସାନପୁଅ | छोटा लड़का |
| ସରିଲାଣି | खत्म हो गया |
| ସରିଯାଇଥିବ | खत्म हुई होगी |
| ଭାଗ୍ୟବାନ | भाग्यवान् |

| | |
|---|---|
| ଲାଗିସାରିଛନ୍ତି | **काम पर लग गए हैं** |
| ନିଶ୍ଚିନ୍ତରେ | **निश्चिंत होकर** |
| ଜଗନ୍ନାଥଙ୍କ ନାମନେବା | **जगन्नाथ के नाम लेना** |
| ମହାପ୍ରଭୁ | **महाप्रभु** |
| ଶାନ୍ତିରେ | **शांति से** |
| ନେଇକରି | **लेकर** |
| ବଂଚିପାରିବେ | **जी सकते हैं** |

## अभ्यास

**I.** (1) **नीचे दिए गए वाक्यांश तथा वाक्य दोहराइए।**

1. ଧାନକଟା ଛୁଟି
2. ଥରକୁ ଥର
3. କେଡୁଟିଏ
4. ଗୁଲୁ ଗୁଲୁ କଥା
5. ଠୁକୁ ଠୁକୁ ଚାଲି

(2)

1. ଏଥର ମୋ ବଡ଼ପୁଅ ଘରକୁ ଭୋପାଳ ଯାଇପାରେ।
2. ନାଁ, ମୁଁ ଗାଁକୁ ଯାଇ ପାରୁନି।
3. ଏମିତି ଯାତ୍ରା କଲେ ଆପଣଙ୍କ ଦେହ ସହିପାରିବ ତ ?
4. ଯେତେ ଦିନ ମୁଁ ଯାଇ ପାରୁଥିବି, ଯାଉଥିବି।
5. ବୋହୂ ଯେତେଦିନ ରହିବେ, ସେତେଦିନ ତ ଆପଣ ଭଲରେ ଖାଇ ପାରିବେ।
6. ମୁଁ କାମ କରିପାରେ।
7. ଆମେ କାମ କରିପାରୁ।
8. ତୁ କାମ କରିପାରୁ।
9. ତୁମେ କାମ କରିପାର।
10. ଆପଣ କାମ କରିପାରନ୍ତି।
11. ସେ କାମ କରିପାରେ।

ଗଣ-ମାଧ୍ୟମ ନିଶ୍ଚୟ
ବଦଳେଇ ପାରିବ। ଏଥିପାଇଁ
ସାମ୍ବାଦିକ ମାନଙ୍କର
ଗୁରୁଦାୟିତ୍ୱ ରହିଛି।
ସମାଜରେ ଘଟୁଥିବା ଅନ୍ୟାୟ,
ଅତ୍ୟାଚାର, କୁସଂସ୍କାର ଓ
ଶୋଷଣ ବିରୁଦ୍ଧରେ
ସାମ୍ବାଦିକର କଲମ ସର୍ବଦା
ଜାଗ୍ରତ ରଖିବାକୁ ହେବ।
ସେଥିପାଇଁ କୁହାଯାଏ କି,
ଅଶୀ ଠାରୁ ମସୀର ବଳ
ବେଶୀ।

ସୁରେଶ : କଳା, ସାହିତ୍ୟ ଓ ସଂସ୍କୃତିର
ବିକାଶ ପାଇଁ ଗଣ-ମାଧ୍ୟମର
ଭୂମିକା ବାବଦରେ ପଦେ
କୁହନ୍ତୁନା?

ମହତାବ : ବେତାର ଓ ଦୂରଦର୍ଶନ
ମାଧ୍ୟମରେ ସଂଗୀତ, ନୃତ୍ୟ,
ନାଟକ, ଚଳଚ୍ଚିତ୍ର, କଳା,
ସାହିତ୍ୟ ଓ ଲୋକ ସଂସ୍କୃତି
ଆଦିର ବହୁଳ ପ୍ରସାରଣ
ହେଉଛି। ସମ୍ବାଦପତ୍ର ଗୁଡ଼ିକର
'ସାପ୍ତାହିକ ବିଶେଷାଙ୍କ' ମଧ୍ୟ
ଅଛି। ଏଥିରେ କଳା,
ସାହିତ୍ୟ, ସଂସ୍କୃତି ଆଦି
ବିଷୟରେ ବହୁ ମୌଳିକ
ଲେଖା ଓ ଭାବ ଗର୍ଭକ
ପ୍ରବନ୍ଧ ପ୍ରକାଶିତ ହେଉଛି।
ଏହା ପାଠୁଆଙ୍କ ପାଇଁ ବହୁତ

सुरेश : कला, साहित्य और संस्कृति के विकास के लिए जन-संचार माध्यम की भूमिका के बारे में कुछ कहिए ना?

महताब : आकाशवाणी और दूरदर्शन के माध्यम से संगीत, नृत्य, नाटक, चलचित्र, कला, साहित्य और लोक संस्कृति आदि के बहुत कार्यक्रम प्रसारित हो रहे हैं। समाचार पत्रों के 'साप्ताहिक विशेषांक' भी हैं। इन में कला, साहित्य, संस्कृति आदि के विषयों पर मौलिक लेख और भावपूर्ण निबंध प्रकाशित हो रहे हैं। ये पढ़े-लिखे लोगों के लिए उपयोगी (सिद्ध) हैं। यह सब हमारी कला, साहित्य और संस्कृति (के लिए) जन-संचार माध्यम का देन है।

सुरेश : आपका अमूल्य समय मैं और अधिक नहीं लूँगा। यह मेरा अंतिम प्रश्न है। आधुनिक जीवन में जन-संचार माध्यम की अपरिहार्यता के बारे में आप की राय क्या है ?

महताब : जन-संचार माध्यम ने आज की दुनियाँ को छोटासा बना दिया है। क्षण भर में हम दुनियाँ के किसी भी प्रांत (भाग) की घटनाएँ जान सकते हैं। जन-संचार माध्यम ने आज सारे

ସହାୟକ ହେଉଛି । ଏହି ସବୁତ ଆମ କଳା, ସାହିତ୍ୟ ଓ ସଂସ୍କୃତିକୁ ଗଣ-ମାଧ୍ୟମର ଅବଦାନ ।

सुरेश : आज शाम आपसे मुलाकात कर (के) मैं स्वयं को धन्य समझता हूँ। आप की इस महामनस्कता (बड़ापन) के लिए विशेष धन्यवाद।

ସୁରେଶ : ଆପଣଙ୍କର ମୂଲ୍ୟବାନ ସମୟ ଆଉ ଅଧିକ ନେବିନାହିଁ । ଏଇ ମୋର ଶେଷ ପ୍ରଶ୍ନ । ଆଧୁନିକ ଜୀବନରେ ଗଣ-ମାଧ୍ୟମର ଅପରିହାର୍ଯ୍ୟତା ସଂପର୍କରେ ଆପଣଙ୍କ ରାୟ କ'ଣ?

महाताब : अच्छा, मैं जा रहा हूँ सुरेश। फिर मिलेंगे।

ମହତାବ : ଗଣ-ମାଧ୍ୟମ ଆଜିର ବିଶ୍ୱକୁ ସଙ୍କୁଚିତ କରିଦେଇଛି । ମୂହୂର୍ତ୍ତକ ଭିତରେ ପୃଥିବୀର ଯେ କୌଣସି ପ୍ରାନ୍ତର ଘଟଣା ଆମେ ଜାଣି ପାରୁଛୁ, ଦେଖି ପାରୁଛୁ । ଗଣ- ମାଧ୍ୟମ ଆଜି ଏକତାର ବନ୍ଧନରେ ସମଗ୍ର ବିଶ୍ୱକୁ ବାନ୍ଧି ଦେଇଛି ।

सुरेश : नहीं, नहीं। हमारे साथ आप भोजन करके ही जाएँगे। मैं अपनी गाड़ी में आपको छोड़ कर आऊँगा।

विश्व को एकता के बंधन में बाँध दिया है।

ସୁରେଶ : ଆଜି ସନ୍ଧ୍ୟାରେ ଆପଣଙ୍କୁ ସାକ୍ଷାତ କରି ନିଜକୁ ଧନ୍ୟ ମନେ କରୁଛି । ଆପଣଙ୍କର ଏ ମହାନୁଭବତା ପାଇଁ ଅଶେଷ ଧନ୍ୟବାଦ ।

ମହତାବ : ହଉ, ମୁଁ ଯାଉଛି ସୁରେଶ । ପୁଣି ଦେଖାହେବ ।

ସୁରେଶ : ନାହିଁ ନାହିଁ, ଆପଣ ଆମ

ସାଙ୍ଗରେ ଖାଇକରି ହିଁ
ଯିବେ । ମୁଁ ମୋ ଗାଡ଼ିରେ
ଆପଣଙ୍କୁ ଛାଡ଼ିଦେଇ ଆସିବି ।

## शब्दार्थ

| ओड़िआ शब्द | हिंदी अर्थ |
|---|---|
| ସାମ୍ବାଦିକ | पत्रकार |
| ସାକ୍ଷାତକାର | साक्षात्कार, भेंट, इन्टर्व्यू |
| ଚିଠି | खत |
| ଦେଖାଶୁଣା କଥା | देखी सुनी बात |
| ପରିବେଷଣ କରିବା | प्रसारित करना |
| ସମ୍ବାଦ ପତ୍ର | समाचार पत्र |
| ଗଣ-ମାଧ୍ୟମ | जन-संचार माध्यम |
| କ୍ଷମା କରିବେ | माफ् करना |
| ସ୍ୱାଧୀନତା | स्वतंत्रता |
| ନିରପେକ୍ଷ | निष्पक्ष |
| ମତାମତ | अभिमत, राय |
| ଭୟ | डर |
| ଉଭୟ | दोनों |
| ନିଶ୍ଚୟ | निश्चय |
| ବିଭ୍ରାନ୍ତିକର | भ्रांतिपूर्ण |
| ପକ୍ଷପାତ | पक्षपात |
| ସମ୍ବାଦ | समाचार |
| କାମଳ ସାମ୍ବାଦିକତା | पांडुर (पीली) पत्रकारिता (स्वार्थपूर्ण पत्रकारिता) |
| ସ୍ୱାର୍ଥପର | स्वार्थपूर्ण |
| ଉଦ୍ଦେଶ୍ୟମୂଳକ | उद्देश्य पूर्ण |

| | |
|---|---|
| ବାସ୍ତବିକ | **वास्तविक** |
| ସୁଧାରି ପାରିବା | **सुधार करना** |
| ଗୁରୁ ଦାୟିତ୍ୱ | **महत्वपूर्ण दायित्व** |
| ସଂକୁଚିତ | **संकोचन** |
| ଅଣୀ | **तलवार** |
| ମସୀ | **स्याही** |
| ବିଶେଷାଙ୍କ | **विशेषांक** |
| ଭାବଗର୍ଭିକ | **भावपूर्ण** |
| ପ୍ରବନ୍ଧ | **निबंध** |
| ଅପରିହାର୍ଯ୍ୟତା | **अपरिहार्यता** |
| ମୂଲ୍ୟବାନ ସମୟ | **मूल्यवान समय** |
| ମୁହୂର୍ତ୍ତକ ଭିତରେ | **क्षण भर में** |
| ଯେକୌଣସି ପ୍ରାନ୍ତ | **हर भाग** |
| ବାନ୍ଧିଦେବା | **बांधना** |
| ଅଶେଷ | **विशेष** |

## अभ्यास

**I.** 1) **नीचे दिए गए वाक्य दोहराइए।**

1. ସାକ୍ଷାତକାର ନେବା ଗୋଟିଏ ମୁଖ୍ୟ କାମ।
2. ସାମ୍ବାଦିକମାନଙ୍କର ସାକ୍ଷାତକାର ନେବା ଗୋଟାଏ ମୁଖ୍ୟ କାମ।
3. ଚାଲି ଚାଲି ଯିବାକୁ ହେବ।
4. କି ସାକ୍ଷାତକାର ନେବ ?
5. ଜଣେ ସାମ୍ବାଦିକଙ୍କଠୁଁ କି ସାକ୍ଷାତକାର ନେବ ?
6. ପଦେ କୁହନ୍ତୁ ନା ?
7. ଗଣ-ମାଧ୍ୟମର ଅବଦାନ ବାବଦରେ ପଦେ କୁହନ୍ତୁନା ?

2)

1. ମୁଁ ରାଜନୈତିକ ନେତା ନୁହେଁ କି କବି, କଳାକାର ନୁହେଁ।

2. କିନ୍ତୁ ଏଥିପାଇଁତ ସାମ୍ବାଦିକଙ୍କର ଅନେକ ଗୁରୁଦାୟିତ୍ୱ ରହିଛି ।
3. ମହତାବ ବାବୁଙ୍କର ଡ଼େରି ହେଲା କାହିଁକି ?
4. ଶୋଇକି ଆସୁଆସୁ ମହତାବ ବାବୁଙ୍କର ଡ଼େରି ହେଲା ।
5. ଗଣ-ମାଧ୍ୟମର ସ୍ୱାଧୀନତା କାହିଁକି ଦରକାର ?
6. ନିରପେକ୍ଷ ମତାମତ ପ୍ରକାଶ ପାଇଁ ଗଣ-ମାଧ୍ୟମର ସ୍ୱାଧୀନତା ଦରକାର ।
7. କାମଳ ସାମ୍ବାଦିକତା କାହାକୁ କହନ୍ତି ?
8. ବିଭ୍ରାନ୍ତିକର ଓ ପକ୍ଷପାତପୂର୍ଣ୍ଣ ସମ୍ବାଦ ପରିବେଷଣକୁ 'କାମଳ ସାମ୍ବାଦିକତା' କହନ୍ତି ।

**II. कोष्ठक में दिए गए शब्दों के उपयुक्त रूपों का प्रयोग कर वाक्य पूरे कीजिए।**

1. ଶୋଇକି ______ ଟିକେ ଡ଼େରି ହୋଇଗଲା । (ଉଠିବା)
2. ଆପଣ କ'ଣ ନିରପେକ୍ଷ ମତାମତ ପ୍ରକାଶ _____ ? (କରିପାରିବା)
3. ସମାଜକୁ ଗଣ-ମାଧ୍ୟମ ନିଶ୍ଚୟ ବାଟକୁ _____ । (ଆଣି ପାରିବ)
4. ଏଥିରେ ଭାବଗର୍ଭକ ଆଲୋଚନା ଓ ପ୍ରବନ୍ଧ _____ । (ପ୍ରକାଶିତ ହେବା)
5. ଆପଣ, ଆମ ସାଙ୍ଗରେ ______ ଯିବେ । (ଖାଇ)

**III. कोष्ठक में दिए गए शब्दों में से उपयुक्त शब्दों का प्रयोग कर वाक्य पूरे कीजिए।**

1. ସମ୍ବାଦ ପରିବେଷଣ ସହ ସାକ୍ଷାତକାର ନେବା _____ ଏକ ମୁଖ୍ୟ କାମ ।
   (ସାମ୍ବାଦିକ, ସାମ୍ବାଦିକମାନଙ୍କର)
2. ନିୟନ୍ତ୍ରଣାଧୀନ ଗଣ ମାଧ୍ୟମ ______ ନିରପେକ୍ଷ ମତାମତ ପ୍ରକାଶ କରିପାରିବ ?
   (କିଏ, କ'ଣ)
3. ଅନ୍ୟାୟ ବିରୁଦ୍ଧରେ କବିର କଲମ ସର୍ବଦା ______ ଦରକାର ।
   (ଶୋଇ ରହିବା, ଜାଗ୍ରତ ରହିବା)
4. ପୃଥିବୀର ଯେ କୌଣସି ପ୍ରାନ୍ତର ଘଟଣା ଦୂରଦର୍ଶନରେ ଆମେ _____ ।
   (ଦେଖୁଛନ୍ତି , ଦେଖିପାରିବା)
5. ଆଜି ଆପଣଙ୍କୁ ______ ନିଜକୁ ଧନ୍ୟ ମନେ କରୁଛି ।
   (ସାକ୍ଷାତ୍ କରି, ନକହି)

**IV. कोष्ठक में दिए गए हिंदी शब्दों के समानार्थक ओड़िआ शब्दों का प्रयोग कर वाक्य पूरे किजिए।**

1. ଯୋଶୀ ବାବୁ, ଆଜିର ______ ପଢ଼ିଲେଣି ନା ? **(समाचार पत्र)**
2. କୁଲ୍‌ଦୀପ୍ ନାୟାର୍ ଜଣେ ଖ୍ୟାତନାମା ______ । **(पत्रकार)**
3. ଆପଣ ଆଜି ସକାଳର ______ ଶୁଣିଲେଣି ନା ? **(समाचार)**
4. ସେ _____ ଆମ ଘରକୁ ଆସନ୍ତି । **(कभी-कभी)**
5. ତାଙ୍କ ସହ ମୋର _______ ହୋଇପାରିଲା ନାହିଁ । **(मुलाकात)**

**V. नीचे दिए गए (क) तथा (ख) खंड़ों के वाक्यांशों का सही मिलान कर वाक्य बनाइए।**

| (क) | (ख) |
|---|---|
| ତମେ କହିଥିଲ ବୋଲିତ | ଆପଣଙ୍କ ମତାମତ କ'ଣ |
| ଆଜି ମୁଁ ଆପଣଙ୍କୁ | ଆସୁଥିବାର ମୁଁ ଦେଖିଛି |
| ଏ ସଂପର୍କରେ | ଆପଣଙ୍କୁ ଛାଡ଼ି ଦେଇ ଆସିବି |
| ସେ ଚାଲି ଚାଲି | ମୁଁ ଆସିଲି |
| ମୁଁ ମୋ ଗାଡ଼ିରେ | ସାକ୍ଷାତକାର ନେବାପାଇଁ ଡାକିଛି |

**VI. उदाहरण के अनुसार दिए गए वाक्यों को अलग अलग वाक्यों में खंडित किजिए।**

**उदाहरण:-** କେତେକ ସାମ୍ବାଦିକ ସ୍ୱାର୍ଥ ଓ ନାମ କମେଇବା ଉଦ୍ଦେଶ୍ୟରେ ଏଭଳି ସମ୍ବାଦ ପରିବେଷଣ କରନ୍ତି ।

1) କେତେକ ସାମ୍ବାଦିକ ସ୍ୱାର୍ଥ ଓ ନାମ କମାନ୍ତି ।
2) ସେମାନେ ଉଦ୍ଦେଶ୍ୟ ରଖି ଏଭଳି ସମ୍ବାଦ ପରିବେଷଣ କରନ୍ତି ।

1. ମୁଁ ରାଜନୈତିକ ନେତା ନୁହେଁ କି କବି କଳାକାର ନୁହେଁ ।
2. ନିୟନ୍ତ୍ରଣ ରହିଲେ ଉପରକୁ ଭୟ ଓ ଉପରୁ ହସ୍ତକ୍ଷେପ ରହିବ ।
3. ଗଣ ମାଧ୍ୟମ ବିଭ୍ରାନ୍ତିକର ଓ ପକ୍ଷପାତପୂର୍ଣ୍ଣ ସମ୍ବାଦ ପରିବେଷଣ କରୁଛି ।
4. ଏଥିରେ ମୌଳିକ ଲେଖା ଓ ପ୍ରବନ୍ଧ ପ୍ରକାଶିତ ହେଉଛି ।
5. ଆଜି ସନ୍ଧ୍ୟାରେ ଆପଣଙ୍କୁ ସାକ୍ଷାତ କରି ନିଜକୁ ଧନ୍ୟ ମନେ କରୁଛି ।

## पढ़िए और समझिए

# ଐତିହ୍ୟର ଦର୍ଶନ
## ऐतिह्यर दर्शन

ଇତିହାସର ଛାତ୍ରଭାବେ ରତ୍ନଗିରି, ଲଳିତଗିରି ଓ ଉଦୟଗିରିର ବୌଦ୍ଧ କୀର୍ତ୍ତି ସଂପର୍କରେ ଅନେକ ପଢ଼ିଛି। ଛାତ୍ରାବସ୍ଥାରେ ବି ଥରେ ଆସିଥିଲି। କିନ୍ତୁ ଭାରତ ସରକାରଙ୍କ ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣ ସଂସ୍ଥା ଦ୍ୱାରା ଖନନ ହେବା ପରେ ରତ୍ନଗିରିକୁ ଆସିବା ମୋର ପ୍ରଥମ। ମନ ଆନନ୍ଦରେ ନାଚି ଉଠୁଥାଏ। ରାସ୍ତାର ଦୁଇ ପାଖରେ ଦିଗନ୍ତ ବିସ୍ତାରୀ ସବୁଜ ଧାନ କ୍ଷେତ। ସତେ ଯେମିତି ସବୁଜ ଶାଢ଼ୀ ପିନ୍ଧିଛି ପ୍ରକୃତି ରାଣୀ।

ପାହାଡ଼ର ପାଦ ଦେଶରେ ଗାଡ଼ି ରଖିଲୁ। ପାହାଡ଼ ଉପରକୁ ଗୋଟିଏ ଚଲା ବାଟ ପଡ଼ିଛି। ଦଳେ ପୁଅ ଝିଅ ସେଇବାଟେ ଯାଉଥାଆନ୍ତି। ଉଠାଣି ହେଲେ ବି ସେଇବାଟେ ଆମର ପାହାଡ଼ ଚଢ଼ା ଆରମ୍ଭ ହେଲା। ଆମେ ଯାଇ ଶିଖରରେ ପହଞ୍ଚିଲୁ।

ପ୍ରଥମେ ଦେଖିଲୁ ଇଟା ନିର୍ମିତ ଏକ ପ୍ରକାଣ୍ଡ ବୌଦ୍ଧ ସ୍ତୁପ। ଚାରି ପାଖରେ ଘେରି ରହିଛି ଅନେକ ଛୋଟ ଛୋଟ ସ୍ତୁପ। ଏହାର ଅନତିଦୂରରେ ଭଗ୍ନ ମହାବିହାରର ବିସ୍ତୀର୍ଣ୍ଣ ପ୍ରାଙ୍ଗଣ। ପ୍ରବେଶ ଦ୍ୱାରରେ ମୁଗୁନି ପଥରରେ ତିଆରି ସୂକ୍ଷ୍ମ କାରୁକାର୍ଯ୍ୟ ପୂର୍ଣ୍ଣ ଏକ ଦ୍ୱାରବନ୍ଧ। ପଥରର ପ୍ରଶସ୍ତ ଚଟାଣ, ବିରାଟକାୟ ବୁଦ୍ଧ ମୂର୍ତ୍ତି ଓ ବୁଦ୍ଧ ମସ୍ତକ, ବୌଦ୍ଧ କଳାର ବହୁ ଦେବ ଦେବୀ ମୂର୍ତ୍ତିରେ ବିହାରଟି ପରିପୂର୍ଣ୍ଣ। ବୌଦ୍ଧ ଯୁଗୀୟ କଳା ଓ ଭାସ୍କର୍ଯ୍ୟର ଏ ଅପୂର୍ବ ସମାହାର ଦେଖି ଆମେ ବିମୁଗ୍‌ଧ ହୋଇଗଲୁ। ତା' ପରେ ଗଲୁ ମ୍ୟୁଜିୟମ୍ ଦେଖିବା ପାଇଁ। ଏ ସମସ୍ତ ଦେଖିସାରି ଅପରାହ୍ନକୁ ବାହାରିଲୁ ଉଦୟଗିରି।

ବିରୂପା ନଦୀ କୂଳରେ ପ୍ରକୃତିର ସୁରମ୍ୟ କୋଳରେ ଉଦୟଗିରି ବୌଦ୍ଧ ପୀଠ ଅବସ୍ଥିତ। ଏକ ବିରାଟ ସ୍ତୁପ ଓ ବିହାର ଖନନ ହୋଇ ଏଠାରେ ବାହାରିଛି। ଏ ସମସ୍ତ ସଙ୍ଗେ ସଙ୍ଗେ ପାହାଡ଼ କଟା ହୋଇ ଖୋଳା ଯାଇଥିବା ଏକ ବିରାଟ ଗଭୀର କୂପ ଏହାର ମୁଖ୍ୟ ଆକର୍ଷଣ।

ଆଉ ଡ଼େରି ନକରି ଶୀଘ୍ର ଲଳିତଗିରି ଯିବାପାଇଁ ମିଶ୍ରବାବୁ ସୂଚେଇ ଦେଲେ। ଆମେ ଯାଇ ସେଠାରେ ପହଞ୍ଚୁ ପହଞ୍ଚୁ ଅପରାହ୍ନ ୪ଟା। ଅନେକ ଭଗ୍ନ ସ୍ତୁପ ଓ କାରୁକାର୍ଯ୍ୟ ବିମଣ୍ଡିତ ମୂର୍ତ୍ତିରେ ପରିପୂର୍ଣ୍ଣ ଲଳିତଗିରି ବିହାରର କଳା ସ୍ଥାପତ୍ୟ ଅନନ୍ୟ ସାଧାରଣ। ସବୁ ଗୋଟି ଗୋଟି ବୁଲି ଦେଖିଲୁ। ପାହାଡ଼ ତଳେ ପଥର ଶିଳ୍ପୀମାନେ ମୂର୍ତ୍ତି ତିଆରି କରୁଥିବାର ଦେଖିଲୁ। ମୂର୍ତ୍ତି ଗୁଡ଼ିକର ଗଢ଼ଣ ଅତି ସୁନ୍ଦର। ଲଳିତ ଗିରିର ପଥର ଶିଳ୍ପୀମାନେ ଏବେ ବି ଏଇ ଶିଳ୍ପ କଳାକୁ ବଞ୍ଚେଇ ରଖିଛନ୍ତି। ଏହା କମ୍ ଗୌରବର କଥା ନୁହେଁ।

ଅତୀତର ଏଇ ତିନୋଟି ବୌଦ୍ଧ ବିହାରକୁ ନେଇ ଗଢ଼ି ଉଠିଥିଲା ନାଳନ୍ଦା ବିଶ୍ୱ ବିଦ୍ୟାଳୟର ସମସାମୟିକ ପୁଷ୍ପଗିରି ବିଶ୍ୱବିଦ୍ୟାଳୟ୍। ବାହାରୁ ବହୁ ଛାତ୍ର ଛାତ୍ରୀ ଆସି ଏଠାରେ ଅଧ୍ୟୟନ କରୁଥିଲେ। ଚୀନ୍ ପରିବ୍ରାଜକ ହୁ-ଏନ୍-ସାଂ ତାଙ୍କ ଭ୍ରମଣ କାହାଣୀରେ ଏଇ 'ପୁଷ୍ପଗିରି' ବିଶ୍ୱବିଦ୍ୟାଳୟ୍ କଥା ମଧ୍ୟ ଉଲ୍ଲେଖ କରିଛନ୍ତି। ଆଜି କର୍ପୂର ଉଡ଼ିଯାଇ କନା ଖାଲି ପଡ଼ି ରହିଛି।

ପଶ୍ଚିମ ଆକାଶରେ ସୂର୍ଯ୍ୟ ଅସ୍ତପ୍ରାୟ୍। ଆମେ କ୍ଳାନ୍ତ ହୋଇ ଯାଇଥାଉ। ଏବେ ଘର ଲେଉଟାଣି ବେଳ। ଅତୀତ ଉତ୍କଳର ଶିକ୍ଷା, ସଂସ୍କୃତି, କଳା ଓ ଭାସ୍କର୍ଯ୍ୟର ଅସ୍ତମିତ ସୂର୍ଯ୍ୟକୁ ପଛରେ ଛାଡ଼ି ଆମେ ଚାଲିଲୁ ଆଗକୁ ଆଗକୁ।

## शब्दार्थ

| **ओड़िआ शब्द** | **हिंदी अर्थ** |
|---|---|
| ଅସ୍ତ | **अस्त** |
| ଥରେ | **एक बार** |
| ପ୍ରତ୍ନ ତାତ୍ତ୍ୱିକ ସର୍ବେକ୍ଷଣ ସଂସ୍ଥା | **पुरातात्विक सर्वेक्षण-संस्था (पुरातत्व सर्वेक्षण विभाग)** |
| ଖନନ | **खनन, खोदन** |
| ଦିଗନ୍ତ ବିସ୍ତାରୀ | **दिगंत के विस्तार तक (क्षितिज पर्यंत)** |
| ସବୁଜ | **हरा** |
| ପିନ୍ଧିବା | **पहनना** |
| ଦଳ | **वर्ग, समूह** |
| ପ୍ରକାଣ୍ଡ | **बहुत बड़ा** |
| ସ୍ତୁପ | **स्तूप** |
| ମୁଗୁନି ପଥର | **काला पत्थर** |
| ସୂକ୍ଷ୍ମ | **सूक्ष्म** |
| କାରୁକାର୍ଯ୍ୟ ମଣ୍ଡିତ | **कला-मंडित** |
| ଦ୍ୱାର ବନ୍ଧ | **(दरवाज़े की) चौखट** |
| ଭାସ୍କର୍ଯ୍ୟ | **मूर्तिकला, शिल्प** |
| ଅପୂର୍ବ ସମାହାର | **अपूर्व समाहार** |

| | |
|---|---|
| ବିମୁଗ୍ଧ | **मुग्ध** |
| ସୁରମ୍ୟ | **सुरम्य, सुंदर** |
| କଟା ହେବା | **काटना** |
| ତିଆରି | **निर्माण** |
| ଗଭୀର କୂପ | **गहरा कुआँ** |
| ସ୍ଥାପତ୍ୟ | **स्थापत्य** |
| ଅନନ୍ୟ ସାଧାରଣ | **अनन्य साधारण/असामान्य, असाधारण** |
| ଗୋଟିଗୋଟି | **एक एक** |
| ଗଢ଼ଣ | **गठन** |
| ବଞ୍ଚାଇ ରଖିବା | **जोवित रखना, बचाकर रखना** |
| ସମସାମୟିକ | **समसामयिक** |
| ପରିବ୍ରାଜକ | **परिव्राजक यात्री,** |
| ଆକାଶ | **आसमान, आकाश** |
| ଅସ୍ତପ୍ରାୟ | **अस्तप्राय, डूबता हुआ** |
| କ୍ଲାନ୍ତ | **थका हुआ** |
| ଲେଉଟାଣି | **लौटते हुए** |
| ଅସ୍ତମିତ ସୂର୍ଯ୍ୟ | **सूर्यास्त** |
| ଉତ୍କଳ | **'उत्कल' (ओड़िशा का और एक नाम)** |

## अभ्यास

**I. अनुच्छेद के अनुसार नीचे दिए गए प्रश्नों के उत्तर लिखिए।**

1. ପ୍ରଥମେ ସେମାନେ କେଉଁ ସ୍ଥାନକୁ ବୁଲିବାକୁ ଗଲେ ?
2. ରତ୍ନଗିରିର ଖନନ କାର୍ଯ୍ୟ କିଏ କରିଛନ୍ତି।
3. ସେମାନେ କେଉଁ ବାଟରେ ପାହାଡ଼ ଉପରକୁ ଚଢ଼ିଲେ ?
4. ରତ୍ନଗିରି ବିହାରର ଦ୍ୱାର ବନ୍ଧଟି କି ପଥରରେ ତିଆରି ହୋଇଛି ?
5. କେଉଁ ନଦୀ କୂଳରେ ଉଦୟଗିରି ଅବସ୍ଥିତ ?
6. କାହାର କଳା ସ୍ଥାପତ୍ୟ ଅନନ୍ୟ ସାଧାରଣ ?

7. କେଉଁମାନେ ଏଇ ଶିଳ୍ପ କଳାକୁ ଏବେବି ବଞ୍ଚେଇ ରଖିଛନ୍ତି ?
8. ନାଳନ୍ଦା ବିଶ୍ୱବିଦ୍ୟାଳୟର ସମସାମୟିକ ବିଶ୍ୱବିଦ୍ୟାଳୟ କିଏ ?

**II. नीचे दिए गए कथनों को उसी क्रम में क्रमबद्ध कीजिए जिस क्रम में उन का वर्णन अनुच्छेद में किया गया है।**

1. ମନ ଆନନ୍ଦରେ ନାଚି ଉଠୁଥାଏ।
2. ପ୍ରକୃତିର ସୁରମ୍ୟ କୋଳରେ ଉଦୟଗିରି ବୌଦ୍ଧ ପୀଠ ଅବସ୍ଥିତ।
3. ପାହାଡ଼ ଉପରକୁ ଗୋଟିଏ ଚଲା ବାଟ ପଡ଼ିଛି।
4. ଆଜି କର୍ପୂର ଉଡ଼ିଯାଇ କନା ଖାଲି ପଡ଼ି ରହିଛି।
5. ଆଉ ଡେରି ନକରି ଶିଘ୍ର ଲଳିତଗିରି ଯିବା ପାଇଁ ମିଶ୍ରବାବୁ ସୂଚାଇ ଦେଲେ।
6. ମୂର୍ତ୍ତି ଗୁଡ଼ିକର ଗଢ଼ଣ ବଡ଼ ସୁନ୍ଦର।
7. ପଶ୍ଚିମ ଆକାଶରେ ସୂର୍ଯ୍ୟ ଅସ୍ତ ପ୍ରାୟ।

**III. हिंदी में अनुवाद कीजिए।**

ସାଧାରଣତଃ ଗଣ-ମାଧ୍ୟମ କହିଲେ ମୁଦ୍ରଣ ମାଧ୍ୟମ (ପ୍ରିଣ୍ଟ ମିଡ଼ିଆ), ଟେଲିଭିଜନ, ରେଡ଼ିଓ, ଇଣ୍ଟରନେଟ୍, କମ୍ପ୍ୟୁଟର ଆଦିକୁ ବୁଝାଏ। ଓଡ଼ିଆରେ ଦୈନିକ ଖବରକାଗଜ ସାଙ୍ଗକୁ ସାପ୍ତାହିକ, ପାକ୍ଷିକ, ମାସିକ, ତ୍ରୈମାସିକ କିମ୍ବା ବାର୍ଷିକ ପତ୍ର ପତ୍ରିକା କେବଳ ମନୋରଞ୍ଜନ ପାଇଁ ନୁହେଁ ବରଂ ସଂସ୍କୃତିର ବିଭିନ୍ନ ଦିଗ ସହିତ ସାଧାରଣ ଲୋକଙ୍କୁ ପରିଚିତ କରେଇବା ପାଇଁ ଏକ ବଳିଷ୍ଠ ମାଧ୍ୟମ ଅଟେ। ଭାରତରେ ଅନେକଙ୍କର ଧାରଣା ଯେ, ଇଂରାଜୀ ଭାରତର ପ୍ରମୁଖ ଭାଷା। ଏହା ସତ ନୁହେଁ। ଭାରତର ୨ ରୁ ୪ ପ୍ରତିଶତ ଲୋକ କୌଣସି ନା କୌଣସି ପ୍ରକାରରେ ଇଂରାଜୀ ସହିତ ପରିଚିତ। ଭାରତରେ ଇଂରାଜୀ ପ୍ରକାଶନ ଭାରତୀୟ ପ୍ରକାଶନର ମାତ୍ର ୨୦ ଭାଗ। ଇଂରାଜୀ ଏକ ନିର୍ବାଚିତ ଗୋଷ୍ଠୀର ଭାଷା।

ଆଉ ମଧ୍ୟ ଟେଲିଭିଜନ୍ ଏକ ବଳିଷ୍ଠ ମାଧ୍ୟମ। ଆଜିକାଲି ଟେଲିଭିଜନ୍ ଦ୍ୱାରା ଯେତିକି ଉପକାର ହୋଇଥାଏ ସେତିକି ଅପକାର ହୋଇଥାଏ। ଗାନ୍ଧୀ ଓ ରବିନ୍ଦ୍ରନାଥଙ୍କ ସମ୍ପାଦକ କହିଥିଲେ ଯେ, ଟେଲିଭିଜନ ଖୋଲିଲେ ଆପଣା ଶୋଇବା ଘରେ ଫେରିବାଲାକୁ ଦେଖିବାକୁ ମିଳିବ। ଏହା ହେଉଛି ଆଧିନିକ କାଳର ବ୍ୟବସାୟିକରଣ ଉପରେ ଆକ୍ଷେପ।

ରେଡ଼ିଓର ବିସ୍ତାର ଟେଲିଭିଜନ୍ ଅପେକ୍ଷା ଅଧିକ। ଗାଁ ଗହଳିଠାରୁ ଆରମ୍ଭ କରି ସହରପର୍ଯ୍ୟନ୍ତ ପ୍ରତ୍ୟେକଙ୍କ ପାଖରେ ରେଡ଼ିଓ ଥାଏ। ଶୁଣିବାବାଲାଙ୍କର ରେଡ଼ିଓ ଅଧିକ

ପ୍ରୟୋଜନ ଓ ପ୍ରିୟ୍। ଏହା ନିଃସନ୍ଦେହରେ ଏକ ବଳିଷ୍ଠ ମାଧ୍ୟମ। କିନ୍ତୁ ବର୍ତ୍ତମାନ ଦେଖାଯାଉଛି ଯେ, ଏହାର ଆଦର ଧୀରେ ଧୀରେ କମି ଆସିଲାଣି। କାରଣ ଆଜିକାଲି ଇଣ୍ଟରନେଟର ଯୁଗ। ଏହା କମ୍ ସମୟ୍ ଭିତରେ ଏବଂ କମ୍ ଖର୍ଚ୍ଚରେ ସମସ୍ତଙ୍କ ପାଖରେ ପହଞ୍ଚି ପାରେ। ଏହା ସମଗ୍ର ବିଶ୍ୱକୁ ଖୁବ୍ ଅଳ୍ପ ସମୟ୍ ମଧ୍ୟରେ ଯୋଡ଼ିପାରୁଛି। ପୃଥିବୀରେ ୫୦୦୦ ରୁ ୬୦୦୦ ପର୍ଯ୍ୟନ୍ତ ଭାଷା ଅଛି। ଏହି ଭାଷାଗୁଡ଼ିକ ଭିନ୍ନ ଭିନ୍ନ ସଂସ୍କୃତିର ପରିଚୟ୍ ବହନ କରନ୍ତି। ଗୋଟିଏ ଭାଷାରେ ବହୁଭାଷିକ ପୃଥିବୀକୁ ଧରିବା ଯେପରି ଅସମ୍ଭବ ବହୁଭାଷିକ ଭାରତକୁ ଧରିବା ମଧ୍ୟ ସେହିପରି ଅସମ୍ଭବ। ବିଭିନ୍ନ ଭାଷା ଜରିଆରେ ଭିନ୍ନ ଭିନ୍ନ ଗୋଷ୍ଠୀ ସହ ସମ୍ପର୍କ ବଜାୟ୍ ରଖିବା ଗଣ-ମାଧ୍ୟମ ପାଇଁ ଏକ ଆହ୍ୱାନ।

**IV.** **ओड़िआ में अनुवाद कीजिए।**

**महात्मा गांधी भारतीय स्वतंत्रता संग्राम के अनिषेध्य नेता थे। वे अहिंसा के पुजारी थे लेकिन वे अहिंसा को दुर्बल व्यक्ति के लिए प्रतिरोध न करने का बहाना नहीं मानते थे। स्वतंत्रता के दीवानों का एक दल ऐसा भी था जो अहिंसा का विरोधी था। उन का विश्वास था कि हँसते-हँसते फाँसी पर चढ़ेंगे लेकिन विदेशियों को मारेंगे। इस से वे डरेंगे और अपने देश से निकलेंगे। विदेशियों को बल से ही भारत से निकाल सकेंगे। देशभक्ति सारे भारत में फैल रही थी। नेता गण जेल जाकर अपना फर्ज़ पूरा कर रहे थे। बच्चे गली-गली घूम कर गाने गाते थे। इस आंदोलन से कोई नहीं बचा। १५ अगस्त १९४७ को हमें आज़ादी मिली। जब सारी दुनिया सो रही थी, भारत नये युग में प्रवेश कर रहा था। शहीदों के सपने पूरे होगए। जयहिंद।**

**V.** **मोबैल फोन् की उपयोगिता के बारे में एक अनुच्छेद ओड़िआ में लिखिए।**

## टिप्पणी

କର୍ପୂର ଉଡ଼ିଯାଇ କନା ଖାଲି ପଡ଼ି ରହିଛି :-

**यह ओड़िआ का एक प्रसिद्ध मुहावरा है। इसका अर्थ, 'आभा चली गई केवल प्रतीक शेष है।'**

# ପାଠ 19 पाठ

## ରଥଯାତ୍ରା
### रथजात्रा

ଦାସ : ଶର୍ମା ବାବୁ, ଜଗନ୍ନାଥଙ୍କ ମହାପ୍ରସାଦ ଆଉ ନିର୍ମାଲ୍ୟ ନିଅନ୍ତୁ ।

ଶର୍ମା : ଆପଣ କ'ଣ କାଲି 'ରଥଯାତ୍ରା' ଦେଖିବାକୁ ପୁରୀ ଯାଇଥିଲେ?

ଦାସ : ହଁ ଆଜ୍ଞା, ମୁଁ ନଗଲେ ତ ପିଲାମାନେ ଯିବେନି । ସେଥିପାଇଁ ମତେ ଯିବାକୁ ପଡ଼ିଲା ।

ଶର୍ମା : ଆମକୁ କହିଥିଲେ ତ ଆମେ ବି ଯାଇଥାନ୍ତୁ । ସେଠି ଆପଣ କ'ଣ କ'ଣ ସବୁ କଲେ ।

ଦାସ : ଆମେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ରଥ ଟାଣିଲୁ । ଏବେ ତାହା ଗୁଣ୍ଡିଚା ମନ୍ଦିର ପାଖରେ ଅଛି । ନଅ ଦିନ ପରେ ରଥ ଗୁଣ୍ଡିଚା ମନ୍ଦିରଠୁଁ ଫେରିବ । ସେଦିନ 'ବାହୁଡ଼ା ଯାତ୍ରା' ହେବ ।

ଶର୍ମା : ଆପଣ 'ବାହୁଡ଼ା' ଦିନ ଯଦି ପୁରୀ ଯିବେ, ତେବେ ମୁଁ ବି ଯିବି ।

ଦାସ : ତେବେ ତ ନିଶ୍ଚୟ ଯିବା ।

ଶର୍ମା : ବର୍ତ୍ତମାନ ଆପଣ ଯଦି

## रथयात्रा

**दास** : **शर्मा बाबु, जगन्नाथ का महाप्रसाद और निर्माल्य लीजिए।**

**शर्मा** : **क्या आप 'रथयात्रा' देखने के लिए कल पुरी गए थे?**

**दास** : **जी हाँ ! मैं न गई, तो बच्चे भी नहीं जाएँगे। इसीलिए मुझे जाना पड़ा।**

**शर्मा** : **हम को कहा होता, तो हम भी गए होते। वहाँ आपने क्या-क्या किया?**

**दास** : **हम ने जगन्नाथ, बलभद्र और सुभद्रा के रथों को खींचा। अब वे गुंड़ीचा मंदिर के पास हैं। नौ दिन के बाद रथ गुंड़ीचा मंदिर से वापस आएँगे। उसी दिन 'बाहुड़ा यात्रा' होगी।**

**शर्मा** : **आप 'बाहुड़ा' के दिन यदि पुरी जाएँगे, तो मैं भी जाऊँगा।**

**दास** : **तब तो अवश्य जाएँगे।**

**शर्मा** : **अभी (इस समय) यदि (हमें) 'रथयात्रा' के संबंध में कुछ कहते, तो बहुत अच्छा होता।**

ଆମକୁ 'ରଥଯାତ୍ରା' ବିଷୟ୍ରେ କିଛି କହନ୍ତେ ତେବେ ଭାରି ଭଲ ହୁଅନ୍ତା ।

ଦାସ : ଆଷାଢ଼ ମାସ ଶୁକ୍ଳପକ୍ଷ ଦ୍ଵିତୀୟ୍ା ତିଥିରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କର 'ରଥଯାତ୍ରା' ହୁଏ ।

ଶର୍ମା : ରଥ କ'ଣ ପ୍ରତି ବର୍ଷ ତିଆରି ହୁଏ ?

ଦାସ : ହଁ, ପ୍ରତିବର୍ଷ ଅକ୍ଷୟ୍ ତୃତୀୟ୍ା ଠାରୁ ରଥ ତିଆରି ଆରମ୍ଭ ହୁଏ । ଜଗନ୍ନାଥଙ୍କ ରଥର ନାମ ନନ୍ଦିଘୋଷ । ଏଥିରେ ଷୋହଳଟି ଚ଼କ ଅଛି । ବଳଭଦ୍ରଙ୍କ ରଥ ତାଳଧ୍ଵଜ । ଏଥିରେ ଚଉଦଟି ଚ଼କ ଅଛି । ସୁଭଦ୍ରାଙ୍କ ରଥ ଦେବଦଳନ । ଏଥିରେ ବାରଟି ଚ଼କ ଅଛି ।

ଶର୍ମା : ଠାକୁରମାନେ ରଥ ଉପରକୁ କିପରି ଆସନ୍ତି ?

ଦାସ : ଦଇତାପତିମାନେ 'ରତ୍ନବେଦୀ' ଉପରୁ ଠାକୁରମାନଙ୍କୁ 'ପହଣ୍ଡି' କରି ଆଣନ୍ତି । ସେତେବେଳେ ଘଣ୍ଟ, ମର୍ଦ୍ଦଳ ଓ ଝାଞ୍ଜ ବାଜୁଥାଏ । ଠାକୁରମାନଙ୍କ ମୁଣ୍ଡରେ ସୋଲର ଟାହିଆ ଝୁଲୁଥାଏ । ଯଦି ତୁମେ ଯାଇଥାଆନ୍ତ, ତେବେ ଦେଖି ଥାଆନ୍ତ, ସତରେ ସେ ଦୃଶ୍ୟ କେଡ଼େ

दास : आषाढ़ के महीने के शुक्लपक्ष की द्वितीया तिथि में जगन्नाथ, बलभद्र और सुभद्रा की 'रथयात्रा' होती है।

शर्मा : क्या रथ हर साल तैयार किया (बनाया) जाता है?

दास : हाँ, हर साल अक्षय तृतीया से रथ की तैयारी शुरू होती है। जगन्नाथ के रथ का नाम 'नंदीघोष' है। इस में सोलह चक्र होते हैं। बलभद्र का रथ 'तालध्वज' हैं। इसमें चौदह चक्र होते हैं। सुभद्रा का रथ 'देबदलन' हैं। इसमें बारह चक्र होते हैं।

शर्मा : देवों की मूर्तियाँ रथ के ऊपर कैसे आती हैं ?

दास : 'दइता पति' (पुरोहित लोग) 'रत्न वेदी' से ठाकुरों को 'पहंडि' करके (धीरे-धीरे चल कर) लाते हैं। तब घंटा, मर्दल और झाँज बजते हैं। ठाकुरों के माथे पर सोल का टहिआ झुलता है। यदि तुम गए होते तो देखते, वह दृश्य कितना मन लुभावन था।

शर्मा : दास बाबु, यदि आपकी पत्नी 'बाहुड़ा' के दिन जाती तो मेरी पत्नी भी जापातीं।

दास : हाँ, मेरी पत्नी तो जाएँगीं। पत्नी सहित जगन्नाथ के दर्शन करने से

| | |
|---|---|
| ମନଲୋଭା । | **बहुत पुण्य होता है। इसीलिए मैं भी जाऊँगा।** |
| ଶର୍ମା : ଦାସ ବାବୁ, ଆପଣଙ୍କ ସ୍ତ୍ରୀ ଯଦି 'ବାହୁଡ଼ା' ଦିନ ଯାଇ ପାରନ୍ତେ, ତେବେ ମୋ ସ୍ତ୍ରୀ ମଧ୍ୟ ଯାଇପାରନ୍ତେ । | **शर्मा : अच्छा, याद रखिए दास बाबू, आप (लोग) नहीं गए (जाएँगे) तो हम भी नहीं जाएँगे। आप के जाने पर (ही) हम जाएँगे।** |
| ଦାସ : ହଁ, ମୋ ସ୍ତ୍ରୀ ତ ଯିବେ । ସପତ୍ନୀକ ଜଗନ୍ନାଥଙ୍କୁ ଦର୍ଶନ କଲେ ବହୁତ ପୁଣ୍ୟ ହୁଏ । ସେଥିପାଇଁ ମୁଁ ମଧ୍ୟ ଯିବି । | **दास : आप ऐसा मत सोचिए। मेरी पत्नी नहीं भी गई, तो भी मैं अवश्य जाऊँगा। आप लोग मेरे साथ आ सकते हैं।** |
| ଶର୍ମା : ଆଚ୍ଛା ! ହେଲେ ମନେ ରଖନ୍ତୁ ଦାସ ବାବୁ, ଆପଣମାନେ ନଗଲେ ଆମେ ମଧ୍ୟ ଯିବୁନି । ଆପଣ ଗଲେ ହିଁ ଆମେ ଯିବୁ । | |
| ଦାସ : ଆପଣ ସେମିତି ଭାବନ୍ତୁନି । ମୋ ସ୍ତ୍ରୀ ନଗଲେ ମଧ୍ୟ ମୁଁ ନିଶ୍ଚୟ ଯିବି । ଆପଣ ମୋ ସାଙ୍ଗରେ ଆସିପାରନ୍ତି । | |

## शब्दार्थ

| **ओड़िआ शब्द** | **हिंदी अर्थ** |
|---|---|
| ମହାପ୍ରସାଦ | **महा प्रसाद, जगन्नाथ का प्रसाद** |
| ନିର୍ମାଲ୍ୟ | **निर्माल्य (जगन्नाथ का अन्न भोग का सूखा हुआ प्रसाद)** |
| ରଥ | **रथ** |
| ଟାଣିଲୁ | **खींचा** |

| | |
|---|---|
| ଆଷାଢ଼ ମାସ | **आषाढ़ा का महीना** |
| ଶୁକ୍ଳପକ୍ଷ | **शुक्लपक्ष** |
| ଦ୍ୱିତୀୟା | **द्वितीय** |
| ତିଥି | **तिथि** |
| ଷୋହଳ | **सोलह** |
| ଚଉଦ | **चौदह** |
| ବାର | **बारह** |
| ଦଇତାପତି | **पुरोहित लोग** |
| ରତ୍ନବେଦୀ | **'रत्नवेदी' (जगन्नाथ का आसन)** |
| ଠାକୁର | **ठाकुर, भगवान, देव** |
| ଘଣ୍ଟ | **घँटा** |
| ଝାଞ୍ଜ | **एक प्रकार का वाद्योपकरण** |
| ଦୃଶ୍ୟ | **दृश्य** |
| ସପତ୍ନୀକ | **पत्नी सहित** |

## ଅଭ୍ୟାସ
## अभ्यास

**I.** ନିମ୍ନରେ ଦିଆଯାଇଥିବା ବାକ୍ୟଗୁଡ଼ିକୁ ପୁର୍ନଃଅଭ୍ୟାସ କରନ୍ତୁ ।
**(नीचे दिए गए वाक्य दोहराइए ।)**

1) ମୁଁ ନଗଲେ ପିଲାମାନେ ଯିବେନି ।

2) ଆମକୁ କହିଥିଲେ ତ ଆମେବି ଯାଇଥାନ୍ତୁ ।

3) ଆପଣ 'ବାହୁଡ଼ା'ରେ ଯଦି ପୁରୀ ଯାଆନ୍ତେ, ତେବେ ମୁଁ ବି ଯାଆନ୍ତି ।

4) ଆପଣ ଆମକୁ 'ରଥଯାତ୍ରା' ବିଷୟ୍ରେ ଯଦି କିଚ୍ଛି କହନ୍ତେ, ତେବେ ଭାରି ଭଲ ହୁଅନ୍ତା ।

5) ତୁମେ ଯଦି ଯାଇଥାଆନ୍ତ, ତେବେ ଦେଖିଥାଆନ୍ତ ।

6) ଆପଣଙ୍କ ପିଲାମାନେ ଯଦି 'ବାହୁଡ଼ା'ରେ ଯାଇପାରନ୍ତେ, ତେବେ ମୋ ସ୍ତ୍ରୀ ମଧ୍ୟ ଯାଇପାରନ୍ତେ ।

7) ଆପଣମାନେ ନଗଲେ ଆମେ ମଧ୍ୟ ଯିବୁନି ।
8) ମୋ ପତ୍ନୀ ନଗଲେ ବି ମୁଁ ନିଶ୍ଚୟ ଯିବି ।
9) ଦଇତାପତିମାନେ 'ରତ୍ନବେଦୀ' ଉପରୁ ଠାକୁରମାନଙ୍କୁ 'ପହଣ୍ଡି' କରିଆଣନ୍ତି ।
10) ଜଗନ୍ନାଥଙ୍କୁ ସପତ୍ନୀକ ଦର୍ଶନ କଲେ ବହୁତ ପୁଣ୍ୟ ହୁଏ ।

**II.** ବାକ୍ୟ ଗୁଡ଼ିକରେ ରେଖାଙ୍କିତ ଶବ୍ଦର ସ୍ଥାନରେ ଦିଆଯାଇଥିବା ଶବ୍ଦ ପ୍ରୟୋଗ କରି ବାକ୍ୟଗଠନ କରନ୍ତୁ ।

**(वाक्यों में रेखांकित शब्दों के स्थान पर दिए गए शब्दों का प्रयोग कर वाक्य बनाइए।)**

1) ଆପଣ ଯଦି ବାହୁଡ଼ା ଦିନ ପୁରୀ ଯିବେ, ତେବେ ମୁଁ ଯିବି ।

ଆପଣମାନେ ଯିବେ
ତୁ ଯିବୁ
ତୁମେ ଯିବ
ସେ ଯିବ
ସେମାନେ ଯିବେ

2) ମୁଁ ନଗଲେ ତ ପିଲାମାନେ ଯିବେନି ।
ତୁ
ତୁମେମାନେ
ଆମେମାନେ
ଆପଣମାନେ
ସେମାନେ ।

3) ଆପଣମାନେ ନଗଲେ ଆମେ ମଧ୍ୟ ଯିବୁନି । 4) ମୋ ସ୍ତ୍ରୀ ନଗଲେ ବି ମୁଁ ନିଶ୍ଚୟ ଯିବି ।

ମୁଁ ଯିବିନି ତୋ
ସେ ଯିବେ
ତୁ ଯିବୁନି
ସେମାନଙ୍କ ସେମାନେ ଯିବେ
ତୁମେମାନେ ଯିବନି ତାଙ୍କ
ତୁ ଯିବୁ

| | | | |
|---|---|---|---|
| | ସେ | ଯିବନି | |
| ତୁମମାନଙ୍କ | ତୁମେମାନେ ଯିବ | | |
| | ସେମାନେ | ଯିବେନି | ଆପଣଙ୍କ |
| ଆପଣ | ଯିବେ | | |

5) ଆମକୁ କହିଥିଲେ ତ ଆମେ ବି ଯାଇଥାନ୍ତୁ ।

| | | |
|---|---|---|
| ରାମବାବୁଙ୍କୁ | ସେ | ଯାଇଥାନ୍ତେ |
| ପିଲାମାନଙ୍କୁ | ସେମାନେ | ଯାଇଥାନ୍ତେ |
| ତୁମମାନଙ୍କୁ | ତୁମେମାନେ | ଯାଇଥାନ୍ତ |
| ପୁଅକୁ | ସେ | ଯାଇଥାନ୍ତା |
| ତୁ | ଆମେ | ଯାଇଥାନ୍ତୁ |

**6)** ଆପଣଙ୍କ ପିଲାମାନେ ଯଦି ଯାଇପାରନ୍ତେ, ତେବେ ମୋ ସ୍ତ୍ରୀ ମଧ୍ୟ ଯାଇପାରନ୍ତି ।

| | | | |
|---|---|---|---|
| ସ୍ତ୍ରୀ | ଯାଇପାରନ୍ତେ | ମା | ଯାଇପାରନ୍ତି |
| ପୁଅ | ଯାଇପାରନ୍ତେ | ପୁଅ | ଯାଇପାରନ୍ତା |
| ଝିଅ | ଯାଇପାରନ୍ତେ | ଝିଅ | ଯାଇପାରନ୍ତା |

7) ଆପଣ ଯଦି ଯାଇପାରନ୍ତେ, ତେବେ ମୁଁ ବି ଯାଇପାରନ୍ତି ।

| | |
|---|---|
| ସେ | ଯାଇପାରନ୍ତା |
| ତୁମେ | ଯାଇପାରନ୍ତ |
| ଆପଣମାନେ | ଯାଇପାରନ୍ତେ |
| ତୁ | ଯାଇପାରନ୍ତୁ |
| ସେମାନେ | ଯାଇପାରନ୍ତେ |

**III.** ଉଦାହରଣ ଅନୁସାରେ ଦିଆଯାଇଥିବା ବାକ୍ୟଗୁଡ଼ିକୁ ଯୋଡ଼ି ନୂଆ ବାକ୍ୟ ଗଠନ କରନ୍ତୁ ।
**(उदाहरण के अनुसार दिए गए वाक्य युग्मों को जोडकर नये वाक्य बनाइए ।)**

**(1)** **उदाहरण:-** ଆପଣ କଲିକତା ଯିବେ ।
ମୁଁ କଲିକତା ଯିବି ।
ଆପଣ ଯଦି କଲିକତା ଯିବେ, ତେବେ ମୁଁ ବି ଯିବି ।

1. ସେମାନେ ପରୀକ୍ଷା ଦେବେ ।
2. ତୁ ସବୁ କଥା କହିବୁ ।

ମୁଁ ପରୀକ୍ଷା ଦେବି ।

3. ତୁମେ ଖଣ୍ଡଗିରି ଯିବ ।
ମୁଁ ଖଣ୍ଡଗିରି ଯିବି ।

4. ସ୍ୱାଗତିକା ଗୀତ ଶିଖିବ ।
ମୁଁ ଗୀତ ଶିଖିବି ।

ମୁଁ ସବୁ କଥା କହିବି ।

5. ବାପା ଚାହା ପିଇବେ ।
ମୁଁ ଚାହା ପିଇବି ।

(2) ଉଦାହରଣ :- ଆପଣ କୁହନ୍ତୁ ।
ଭଲ ହୁଅନ୍ତା ।
ଆପଣ ଯଦି କୁହନ୍ତେ ତେବେ ଭଲ ହୁଅନ୍ତା ।

1. ଆପଣ ଯାଆନ୍ତୁ ।
ଭଲ ହୁଅନ୍ତା ।

2. ତୁମେ ଯାଅ ।
ଭଲ ହୁଅନ୍ତା ।

3. ତୁ କହ ।
ଭଲ ହୁଅନ୍ତା ।

4. ସେ ଯାଉ ।
ଭଲ ହୁଅନ୍ତା

5. ସେମାନେ ଯାଆନ୍ତୁ
ଭଲ ହୁଅନ୍ତା

(3) ଉଦାହରଣ :- ଆପଣଙ୍କ ପିଲାମାନେ ଯାଇପାରନ୍ତି ।
ମୋ ସ୍ତ୍ରୀ ଯାଇ ପାରନ୍ତି ।
ଆପଣଙ୍କ ପିଲାମାନେ ଯଦି ଯାଇ ପାରନ୍ତେ, ତେବେ ମୋ ସ୍ତ୍ରୀ ମଧ୍ୟ ଯାଇ ପାରନ୍ତେ ।

1. ତୁମ ପିଲାମାନେ ଆସି ପାରନ୍ତି ।
ମୋ ପିଲାମାନେ ଆସି ପାରନ୍ତି ।

2. ସେମାନଙ୍କ ଛାତ୍ରମାନେ ପଢ଼ି ପାରନ୍ତି ।
ମୋ ଛାତ୍ରମାନେ ପଢ଼ି ପାରନ୍ତି ।

3. ତାଙ୍କ ଲୋକମାନେ କହି ପାରନ୍ତି ।
ଆମ ଲୋକମାନେ କହି ପାରନ୍ତି ।

4. ତୁମ ପୁଅ ଯାଇ ପାରନ୍ତା ।
ତାଙ୍କ ପୁଅ ଯାଇ ପାରନ୍ତା ।

5. ମୁଁ କଟକ ଯାଇ ପାରନ୍ତି ।
   ତୁମେ ଯାଇ ପାରନ୍ତ ।

**IV.** ଉଦାହରଣ ଅନୁସାରେ ନିମ୍ନରେ ଦିଆଯାଇଥିବା ବାକ୍ୟର ଅର୍ଥ ଅନୁସାରେ ଅଲଗା ଅଲଗା ବାକ୍ୟରେ ପରିଣତ କର ।

**(उदाहरण के अनुसार नीचे दिए गए वाक्यों के अर्थ के अनुसार अलग-अलग वाक्यों में खंडित कीजिए ।)**

**उदाहरण:-** ସେ ଯଦି ମନ୍ଦିର ଯାଇଥାଆନ୍ତା, ତେବେ ଭୋଗ ଖାଇଥାଆନ୍ତା ।
ସେ ମନ୍ଦିର ଗଲାନାହିଁ ।
ସେ ଭୋଗ ଖାଇଲା ନାହିଁ ।

1. ତୁ ଯଦି ପରୀକ୍ଷା ଦେଇଥାନ୍ତୁ, ତେବେ ପାସ୍ କରିଥାନ୍ତୁ ।
2. ତୁମେମାନେ ଯଦି ଆସିଥାଆନ୍ତ, ତେବେ ଲିଙ୍ଗରାଜ ମନ୍ଦିର ଦେଖିଥାଆନ୍ତ ।
3. ସେମାନେ ଯଦି ଓଡ଼ିଶା ଆସିଥାନ୍ତେ, ତେବେ ଲିଙ୍ଗରାଜ ମନ୍ଦିର ଦେଖିଥାନ୍ତ ।
4. ପିଲାମାନେ ଯଦି ଖେଳିଥାଆନ୍ତେ, ତେବେ ପ୍ରଥମ ହୋଇଥାନ୍ତେ ।
5. ଆପଣ ଯଦି ପାହାଡ଼ ଚଢ଼ିଥାନ୍ତେ, ତେବେ ଶିବ ମନ୍ଦିର ଦେଖିଥାନ୍ତେ ।

**V.** ବନ୍ଧନୀ ମଧ୍ୟରେ ଦିଆଯାଇଥିବା ଶବ୍ଦଗୁଡ଼ିକରୁ ଉପଯୁକ୍ତ ଶବ୍ଦ ପ୍ରୟୋଗ କରି ବାକ୍ୟ ପୂରଣ କରନ୍ତୁ ।

**(कोष्ठक में दिए गए शब्दों में से उपयुक्त शब्दों का प्रयोग कर वाक्य पूरे कीजिए ।)**

(1) (ରଥ, ଗୁଣ୍ଡିଚା, ନିର୍ମାଲ୍ୟ, ରତ୍ନବେଦୀ, ପୁରୀ)

1. ଜଗନ୍ନାଥଙ୍କ ମହାପ୍ରସାଦ ଆଉ _____ ନିଅନ୍ତୁ ।
2. ଆପଣ କ'ଣ 'ରଥଯାତ୍ରା' ଦେଖିବାକୁ _____ ଯାଇଥିଲେ ?
3. ଏବେ ତାହା _____ ମନ୍ଦିର ପାଖରେ ଅଛି ।
4. ଦଇତାପତିମାନେ ______ ଉପରୁ ଠାକୁରଙ୍କୁ ଆଣନ୍ତି ।
5. ବଳଭଦ୍ରଙ୍କ _____ ତାଳଧ୍ୱଜ ।

**(2)**

1. ଆପଣ 'ବାହୁଡ଼ା' ଦିନ ପୁରୀ _____, ତେବେ ମୁଁ ଯିବି । (ଯିବ, ଯିବେ)
2. ସେ ଯଦି କଟକ ______, ତେବେ ମୁଁ ବି ଯିବି । (ଯିବୁ, ଯିବେ)
3. ତୁମେ ଯଦି ପାଠ _____, ତେବେ ସମସ୍ତେ ପଢ଼ିବେ । (ପଢ଼ିବି, ପଢ଼ିବ)

4. ସେମାନେ ଯଦି କାମ _____, ତେବେ ଆମେ ବି କରିବୁ । (କରିବୁ, କରିବେ)

5. ବୋଉ ଯଦି ମାମୁଁ ଘର _____, ତେବେ ବାପା ବି ଯିବେ । (ଯିବି, ଯିବ)

**(3)**

1. ଯଦି _____ ମନ୍ଦିର ବିଷୟରେ କହନ୍ତେ, ତେବେ ଭଲ ହୁଅନ୍ତା । (ମୁଁ, ବାପା)
2. ଯଦି _____ ପୁରୀ ବିଷୟରେ କହନ୍ତ, ତେବେ ଭଲ ହୁଅନ୍ତା । (ତୁମେ, ମୁଁ)
3. ଯଦି _____ ଦୁର୍ଘଟଣା ବିଷୟରେ କହନ୍ତେ, ତେବେ ଭଲ ହୁଅନ୍ତା । (ତୁମେ, ଆପଣ)
4. ଯଦି _____ ଗାନ୍ଧିଙ୍କ ବିଷୟରେ କହନ୍ତା, ତେବେ ଭଲ ହୁଅନ୍ତା । (ସେ, ସେମାନେ)
5. ଯଦି _____ ନାଚ ବିଷୟରେ କହନ୍ତେ, ତେବେ ଭଲ ହୁଅନ୍ତା । (ତୁମେମାନେ, ସେମାନେ)

**VI.** ଉଦାହରଣ ଅନୁସାରେ ନିମ୍ନରେ ଦିଆଯାଇଥିବା ବାକ୍ୟ ଗୁଡ଼ିକୁ ନିଷେଧାର୍ଥକ ବାକ୍ୟରେ ପରିଣତ କରନ୍ତୁ ।

**(उदाहरण के अनुसार नीचे दिए गए वाक्यों के निषेधार्थक वाक्य बनाइए।)**

**उदाहरण:-** ଆପଣ ଗଲେ ଆମେ ଯିବୁ ।
ଆପଣ ନଗଲେ ଆମେ ବି ଯିବୁନି ।

1. ତୁମେ ଆସିଲେ ମୁଁ ପଢ଼ିବି ।
2. ବାପା ଗଲେ ପିଲାମାନେ ଯିବେ ।
3. ଆମେ ଖାଇଲେ ସେମାନେ ଖାଇବେ ।
4. ତୁମେମାନେ ଦେଲେ ଆମେ ଦବୁ ।
5. ତୁ ନେଲେ ମୁଁ ନେବି ।

**VII.** ବନ୍ଧନୀ ମଧ୍ୟରେ ଦିଆଯାଇଥିବା ହିନ୍ଦୀ କ୍ରିୟା ଗୁଡ଼ିକର ସମାନ ଅର୍ଥ ଥିବା ଓଡ଼ିଆ ରୂପ ପ୍ରୟୋଗ କରି ବାକ୍ୟ ଗଠନ କର ।

**(इस पाठ में पढ़े हुए क्रिया रूपों के आधार पर उपयुक्त रूपों का प्रयोग कर वाक्य पुरे कीजिए।)**

(1)
1. ତୁମେ ଯଦି _____ ତେବେ _____ ।
2. ମୁଁ ଯଦି _____ ତେବେ _____ ।
3. ଆମେ ଯଦି _____ ତେବେ _____ ।

4. ଆପଣ ଯଦି _____ ତେବେ _____ ।
5. ତୁମେମାନେ ଯଦି _____ ତେବେ _____ ।

(2) 1. ଆପଣ _____ ବି ମୁଁ ଯିବି ।
2. ତୁମେ _____ ବି ସେ ଯିବେ ।
3. ମୁଁ _____ ବି ତୁମେ ଯିବ ।
4. ସୁପ୍ରଭା _____ ବି ଆପଣ ଯିବେ ।
5. ସୁପ୍ରଭା _____ ବି ସେମାନେ ଯିବେ।

ପଢ଼ନ୍ତୁ ଓ ବୁଝନ୍ତୁ

## ଚକ୍ରତୀର୍ଥ
## चक्रतीर्थ

ପୁରୀ ଚକ୍ରତୀର୍ଥ ଅଟେ । ତୁମେ ଯଦି କେବେ ପୁରୀ ଯିବ, ପୁରୀ ବଡ଼ ଦାଣ୍ଡରେ ବଡ଼ ଦେଉଳ ଦେଖିବ । ସେଠି ବଡ଼ ଠାକୁରଙ୍କୁ ଦର୍ଶନ କରିବ । ରତ୍ନ ସିଂହାସନ ଉପରେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଝଟ ଝଟ ଦିଶୁଥିବେ । ଦେଉଳର ପୂର୍ବ ଦ୍ୱାର ସିଂହଦ୍ୱାର, ଦକ୍ଷିଣ ପଟେ ଅଶ୍ୱ ଦ୍ୱାର, ପଶ୍ଚିମ ପଟେ ବ୍ୟାଘ୍ର ଦ୍ୱାର ଓ ଉତ୍ତର ପଟେ ହସ୍ତୀ ଦ୍ୱାର ରହିଛି । ତୁମେମାନେ ଯଦି ଆନନ୍ଦ ବଜାର ଯାଇଥା'ନ୍ତ ତେବେ ମହାପ୍ରସାଦ ଖାଇଥା'ନ୍ତ । ନିର୍ମାଲ୍ୟ ବି ପାଇଥା'ନ୍ତ ଆଉ କଳ୍ପବଟକୁ ଛୁଇଁଥା'ନ୍ତ ।

ସାଲବେଗ ଜଗନ୍ନାଥଙ୍କ ପରମ ଭକ୍ତ ଥିଲେ । ସେ ଗରୁଡ଼ ସ୍ତମ୍ଭ ପାଖରେ ବସି ବହୁତ ଜଣାଣ ଲେଖିଥିଲେ । ସମୟ ହେଲେ ଆମେ ମହୋଦଧିରେ ଗାଧୋଇବା । ଯଦି ସୁବିଧା ହୁଅନ୍ତା, ଆମେ ସ୍ୱର୍ଗଦ୍ୱାର ବି ଯାଆନ୍ତେ । ସନ୍ଧ୍ୟାବେଳେ ସମୁଦ୍ରରେ ସୂର୍ଯ୍ୟ ବୁଡୁଥିବ । ସମୁଦ୍ରର ତରଙ୍ଗମାଳା ନାଚି ନାଚି କୂଳ ଛୁଉଁଥିବ । ସେଦିନ ଯଦି ପୂର୍ଣ୍ଣିମା ହୋଇଥାନ୍ତା, ସମୁଦ୍ର ଜଳରେ ଜୁଆର ଫୁଲି ଫୁଲି ଉଠୁଥାନ୍ତା ।

ପୁରୀକୁ ବହୁତ ବିଦେଶୀ ପ୍ରତିବର୍ଷ ଆସନ୍ତି । ଏହା ଓଡ଼ିଶାର ଏକ ପ୍ରସିଦ୍ଧ ସ୍ଥାନ । ଯଦି ଏହାର ସୁରକ୍ଷା ଓ ରକ୍ଷଣାବେକ୍ଷଣ ପାଇଁ ସରକାର ଦୃଷ୍ଟି ଦିଅନ୍ତେ ତେବେ ଏହା ଆହୁରି ପ୍ରସିଦ୍ଧି ଲାଭ କରିପାରନ୍ତା । ଏହାର ସମୁଦ୍ର କୂଳ ଦର୍ଶକଙ୍କୁ ଆକର୍ଷଣ କରେ । କିନ୍ତୁ ବର୍ତ୍ତମାନ ଏହା ପରିଷ୍କାର ହୋଇ ରହିନାହିଁ । ଏହାର ପ୍ରଥମ କାରଣ ହେଉଛି ଏହାର

କୂଳରେ ନାମୀ ଦାମୀ ହୋଟେଲ୍। ଏହି ହୋଟେଲର ଅପରିଷ୍କାର ପାଣି ସମୁଦ୍ର ପାଣିକୁ ଦୂଷିତ କରିଦେଉଛି। ଯଦି ସରକାର ଏଥିପ୍ରତି ଦୃଷ୍ଟି ଦିଅନ୍ତେ ତେବେ ଏହା ଆହୁରି ସୁନ୍ଦର ହୋଇ ଦର୍ଶକଙ୍କୁ ଆକୃଷ୍ଟ କରିପାରନ୍ତା। କିନ୍ତୁ ଦୃଷ୍ଟି ନଦେଲେ ଏହା ଧୀରେ ଧୀରେ ନଷ୍ଟ ହୋଇଯିବ।

ଆଜି ପର୍ଯ୍ୟନ୍ତ ମଧ୍ୟ ସେଠାରେ ରାଜା ଅବସ୍ଥାନ କରନ୍ତି। ସେ ଠାକୁରଙ୍କ ନାମନେଇ 'ରଥଯାତ୍ରା' ବେଳେ ସମସ୍ତ କର୍ମ ପ୍ରତିପାଦନ କରିଥାନ୍ତି। ଏହା ହେଉଛି ଓଡ଼ିଶାର ଏକ ମହାନ୍ ପରଂପରା। 'ରଥଯାତ୍ରା' ଯେ, ବିଶ୍ୱପ୍ରସିଦ୍ଧ ଏକଥା ସମସ୍ତେ ଜାଣନ୍ତି। କିନ୍ତୁ ତା'ର ଯେଉଁ ମହାନ୍ ପୌରାଣିକ କଥା ତାହା ଅଳ୍ପ ଲୋକ ଜାଣନ୍ତି। ଯଦିଓ ଏହା ରହସ୍ୟମୟ୍ ଏହାସତ୍ତ୍ୱେ ବି ଏହା ଦର୍ଶକଙ୍କୁ ଆକୃଷ୍ଟ କରିପାରେ। ଜଗନ୍ନାଥଙ୍କ ରୋଷେଇ ଘର ପୃଥିବୀର ବୃହତ୍ତମ ରୋଷେଇ ଘର ଭାବରେ ଖ୍ୟାତ। ଜଗନ୍ନାଥଙ୍କର ଅନେକ ଭକ୍ତ ତାଙ୍କ ଉପରେ ଅନେକ ଭଜନ ଜଣାଣ ଲେଖିଯାଇଛନ୍ତି। ଓଡ଼ିଶାର ଘରେ ଘରେ ଜଗନ୍ନାଥ ହେଉଛନ୍ତି ଆରାଧ୍ୟ ଦେବତା। ଯଦି ଆମେ ଯିବା ତେବେ ଜଗନ୍ନାଥଙ୍କୁ ଦର୍ଶନ କରି ଆମେ ନିଜକୁ ଧନ୍ୟ ମନେ କରିବା।

## शब्दार्थ

| **ओड़िआ शब्द** | **हिंदी अर्थ** |
|---|---|
| ଚକ୍ରତୀର୍ଥ | **चक्रतीर्थ** |
| ଦର୍ଶନ କରିବ | **दर्शन करना** |
| ରତ୍ନ ସିହ୍ାଂସନ | **रत्न सिंहासन (जगन्नाथ का आसन)** |
| ଜଣାଣ | **प्रार्थना** |
| ମହାପ୍ରସାଦ | **महाप्रसाद** |
| ଝଟ ଝଟ | **चिक्-चिक्** |
| ଦିଶୁଥିବେ | **दिखते होंगे** |
| ପରମ ଭକ୍ତ | **परम भक्त** |
| ଗରୁଡ଼ ସ୍ତମ୍ଭ | **गरुड स्तंभ** |
| ମହୋଦଧି | **महोदधि, समुद्र (पुरी तट की बंगाल की खाड़ी)** |

| | |
|---|---|
| ତରଙ୍ଗମାଳା | **तरंगें, लहरें** |
| ପୂର୍ଣ୍ଣିମା | **पूर्णिमा** |
| ଜୁଆର | **ज्वार** |
| ବିଦେଶୀ | **विदेशी** |
| ସୁରକ୍ଷା | **सुरक्षा** |
| ରକ୍ଷଣାବେକ୍ଷଣ | **रक्षणावेक्षणा** |
| କୂଳ | **तट, किनारा** |
| ପରିଷ୍କାର | **साफ सुधरा** |
| ଆକୃଷ୍ଟ | **आकर्षण** |
| ଅବସ୍ଥାନ | **स्थित** |
| ପରଂପରା | **परंपरा** |
| ଆରାଧ୍ୟ ଦେବତା | **आराध्य देवता** |

## ଅଭ୍ୟାସ
## अभ्यास

**I.** ଅନୁଚ୍ଛେଦର ଆଧାର ଉପରେ ନିମ୍ନରେ ଦିଆଯାଇଥିବା ପ୍ରଶ୍ନର ଉତ୍ତର ଦିଅନ୍ତୁ।
**(अनुच्छेद के आधार पर नीचे दिए गए प्रश्नों के उत्तर दीजिए)**

1. ବଡ଼ ଦେଉଳ କେଉଁଠି ଅଛି ?
2. ଏହାକୁ ଚକ୍ରତୀର୍ଥ କାହିଁକି କୁହାଯାଏ ?
3. ମହାପ୍ରସାଦ କେଉଁଠି ମିଳେ ?
4. ସାଲବେଗ କାହାର ଭକ୍ତ ?
5. ସେ କେଉଁଠି ବସି ଜଣାଣ ଲେଖିଥିଲେ ?
6. କେଉଁ ଦିନ ସମୁଦ୍ର ଜଳରେ ଜୁଆର ଫୁଲି ଫୁଲି ଉଠେ ?
7. ପୁରୀ ଗଲେ ଆମେ କ'ଣ କ'ଣ କରିବା ?
8. ପୁରୀକୁ କ'ଣ ପାଇଁ ବିଦେଶୀ ପର୍ଯ୍ୟଟକ ବେଶୀ ଆସନ୍ତି ?
9. ସରକାର କ'ଣ କଲେ ପର୍ଯ୍ୟଟକ ଅଧିକ ଆକର୍ଷିତ ହେବେ ?
10. କେଉଁଠାରେ ଆଜିପର୍ଯ୍ୟନ୍ତ ରାଜା ଅବସ୍ଥାନ କରନ୍ତି ଓ ସେ କ'ଣ କରନ୍ତି ?

**II.** ଅନୁଚ୍ଛେଦର ଆଧାର ଉପରେ ଦିଆଯାଇଥିବା ବାକ୍ୟର ସଠିକ୍ ବାକ୍ୟ ଲେଖ ।
**(अनुच्छेद के आधार पर दिए गए वाक्यों में से सही वाक्य चुनिए ।)**

1. ଦେଉଳର ପୂର୍ବଦ୍ୱାର ଅଶ୍ୱ ଦ୍ୱାର ।
2. ଦେଉଳର ଉତ୍ତର ଦ୍ୱାର ବ୍ୟାଘ୍ର ଦ୍ୱାର ।
3. ହସ୍ତୀଦ୍ୱାର ଦେଉଳର ପଶ୍ଚିମ ଦ୍ୱାର ।
4. ଅଶ୍ୱ ଦ୍ୱାର ଦେଉଳର ଦକ୍ଷିଣ ଦ୍ୱାର ।
5. ସମୁଦ୍ର କୂଳରେ ସ୍ୱର୍ଗଦ୍ୱାର ଅଛି ।

**III.** ନିମ୍ନରେ ଦିଆଯାଇଥିବା ପ୍ରତ୍ୟେକ ଶବ୍ଦ ସମୂହରୁ ଅନୁପଯୁକ୍ତ ଶବ୍ଦଟି ଲେଖ ।
**(प्रत्येक शब्द समूह में अनुपयुक्त शब्द बताइए ।)**

1. ଜଗନ୍ନାଥ, ବଳଭଦ୍ର, ସାଲବେଗ, ସୁଭଦ୍ରା
2. ବଡ଼ ଦେଉଳ, ବଡ଼ ଠାକୁର, ବୁଡୁଥିବ, ବଡ଼ଦାଣ୍ଡ
3. ଦକ୍ଷିଣ ଦ୍ୱାର, ଉତ୍ତର ଦ୍ୱାର, ସିଂହଦ୍ୱାର, ପଶ୍ଚିମ ଦ୍ୱାର
4. ସିଂହ, ଅଶ୍ୱ, ବ୍ୟାଘ୍ର, ହସ୍ତୀ, ସିଂହାସନ
5. ଅଶ୍ୱ ଦ୍ୱାର, ସ୍ୱର୍ଗ ଦ୍ୱାର, ହସ୍ତୀ ଦ୍ୱାର, ବ୍ୟାଘ୍ର ଦ୍ୱାର

**IV.** ହିନ୍ଦୀରେ ଅନୁବାଦ କରନ୍ତୁ ।

**(हिंदी में अनुवाद कीजिए ।)**

ଯଦି ଆମେ ଭାରତରେ ଶିବ ପୂଜା ପରମ୍ପରାର ଇତିହାସ ପଢ଼ିବା, ଜଣାଯିବ ଯେ, ଏହା ବହୁ ପ୍ରାଚୀନ । ତେବେ ଦକ୍ଷିଣ ଭାରତର ବୀରଶୈବ ଏକ ଜଣାଶୁଣା ସାମାଜିକ ପ୍ରତିଷ୍ଠାନ । ସେହିପରି କାଶ୍ମୀରରେ କାଶ୍ମୀର ଶୈବଧର୍ମ ମଧ୍ୟ ସବୁଆଡ଼େ ଜଣା । ଗୁଜୁରାଟ ଶୈବଧର୍ମ ପ୍ରତିଭିଜ୍ଞା ନାମରେ ସୁପରିଚିତ । ଯଦି ଶିବ ପୂଜାର ପରମ୍ପରା ଓଡ଼ିଶାରେ ପ୍ରାଚୀନ, ହେଲେ ମଧ୍ୟ ତେବେ ଏହା ବିଷୟରେ ବାହାର ଲୋକଙ୍କୁ ଜଣାନାହିଁ । ଯଦି ଓଡ଼ିଶା ଲୋକ ଏ ପରମ୍ପରା ବିଷୟରେ ଲେଖିଥା'ନ୍ତେ ବାହାର ଲୋକଙ୍କୁ ଏ ବିଷୟରେ ଜଣାହୋଇଥାନ୍ତା ।

ତେବେ ଓଡ଼ିଶାର ଜଗନ୍ନାଥ ଧର୍ମ ସାରା ଭାରତରେ ଜଣାଶୁଣା । ଭାରତର ବିଭିନ୍ନ ଧର୍ମଗୁରୁ ପୁରୀକୁ ଆସିଛନ୍ତି । ସେମାନେ ଜଗନ୍ନାଥଙ୍କ ଠାରେ ଆପଣାର ଦେବାଦେବୀଙ୍କୁ ଦେଖିଛନ୍ତି । ଜଗନ୍ନାଥଙ୍କୁ ଜୈନମାନେ "ସର୍ବଜୀନ ବରାର୍ଚ୍ଚିତମ୍" କହିଲାବେଳେ ବୌଦ୍ଧମାନେ "ସର୍ବବୁଦ୍ଧମୟମ୍" କହିଛନ୍ତି । ଶ୍ରୀ ଚୈତନ୍ୟ ଜଗନ୍ନାଥଙ୍କ ଭିତରେ କୃଷ୍ଣଙ୍କୁ ଦେଖିଛନ୍ତି । ଶୈବମାନେ କହିଛନ୍ତି "ବିମଳା ଭୈରବୀଯତ୍ର ଜଗନ୍ନାଥସ୍ତୁ ଭୈରବ" । ଏପରିକି ଶାକ୍ତମାନେ

କହିଛନ୍ତି "ଶ୍ରୀକ୍ଷେତ୍ରେସ୍ତୁ ଜଗନ୍ନାଥ ସ୍ୱୟଂ ଦକ୍ଷିଣ କାଳୀକା"। ଯଦି ବାହାରର ଲୋକ ଏହା ବିଷୟରେ ଶୁଣିବେ ତେବେ ସେମାନେ ଆଶ୍ଚର୍ଯ୍ୟ ହୋଇଯିବେ।

ଆମେ ଯଦି ଐତିହାସିକ ଗବେଷଣା କରି ଦେଖିବା ତେବେ ଜାଣିବା ଯେ, ଜଗନ୍ନାଥଙ୍କ ପ୍ରାଧାନ୍ୟ ହେତୁ ଓଡ଼ିଶାରେ 'ହରିହର ତତ୍ତ୍ୱ' ର ବିକାଶ ହେଲା। ଜଗନ୍ନାଥଙ୍କର ଅନେକ ବେଶ ଭିତରେ 'ହରିହର ବେଶ' ଏକ ପ୍ରମୁଖ ବେଶ। ତେବେ ଏଥିରେ ଶୈବ ଓ ବୈଷ୍ଣବ ତତ୍ତ୍ୱର ମିଳନ ଘଟିଛି। କିନ୍ତୁ ଏହି ତତ୍ତ୍ୱ ଏତେ ପରିମାଣରେ ସ୍ୱୀକୃତି ଲାଭ କଲାନାହିଁ।

ଭୁବନେଶ୍ୱର ହେଉଛି ଏକ ପ୍ରସିଦ୍ଧ ଶୈବକ୍ଷେତ୍ର। ଏଠି ଲିଙ୍ଗରାଜ ମନ୍ଦିର କେବଳ ଓଡ଼ିଶାରେ ନୁହେଁ ସାରା ଭାରତରେ ପ୍ରସିଦ୍ଧ। ଯଦି ଆମେ ଭୁବନେଶ୍ୱର ଯିବା ତେବେ ଲିଙ୍ଗରାଜ ମନ୍ଦିର ଦେଖିବା। ଏହି ଲିଙ୍ଗରାଜ ମନ୍ଦିର ବହୁତ ପୁରୁଣା କ୍ଷେତ୍ର। ଏହା ବିଷୟରେ ମଧ୍ୟ ଯେତେ ବାହାର ଲୋକଙ୍କୁ ଜଣେଇବା କଥା ତାହା ଜଣାଯାଇନାହିଁ। ଯଦି ଓଡ଼ିଶା ଲୋକ ଏହି ପୁରୁଣା ମନ୍ଦିର ଓ ଐତିହାସିକ ସ୍ମାରକ ଉପରେ ବହି ଲେଖିଥା'ନ୍ତେ ତେବେ ଦେଶ ବିଦେଶର ଲୋକ ଓଡ଼ିଶା ଦେଖିବାକୁ ଆସିଥାନ୍ତେ। ସେଥିପାଇଁ ଆମେ ଓଡ଼ିଆ ଭାଷା କହିଲା ବାଲାଙ୍କୁ ହିନ୍ଦୀ ତଥା ଇଂରାଜୀ ଛଡ଼ା, ଭାରତର ଅନ୍ୟ ଭାଷା ପଢ଼ିକରି ସେଥିରେ ଓଡ଼ିଶାର ସଂସ୍କୃତି ଓ ପରମ୍ପରାକୁ ଜଣେଇବା।

**V.** ଓଡ଼ିଆରେ ଅନୁବାଦ କର।
**(ओड़िआ में अनुवाद कीजिए।)**

**समुद्र के किनारे वेला भूमि है। यदि तुम वहाँ जाओगे, तो झाऊ के वन देखोगे। तुम नहीं गए, तो भी चित्र में देखोगे। समुद्र देखने के लिए पर्यटक आते हैं। मछुआरे नाव में जाकर मछली पकड़ते हैं। उन्हें ट्रॉलर मिले तो अधिक मछलियाँ पकड़ सकते हैं। यदि तुम वहाँ गए, तो मछलियाँ लाओगे। तुम नहीं गए, तो भी मैं अवश्य जाऊँगी, क्योंकि मछली मुझे बहुत पसंद है। मछली पालन एक गृह-उद्योग भी है। समुद्र के तटवर्ती क्षेत्रों में मछुआरों की बस्तियाँ हैं। यदि सरकार मछुआरों को धन देकर सहायता कर सकते तो वे यंत्र-चालित नौकाएँ खरीदकर अधिक मछलियाँ पकड़कर विदेशों को भेज सकेते। मछलियों को टीन के डिब्बों में बंद कर अधिक समय तक सुरक्षित रख सकते हैं।। अभी हमारे देश में मछलियों से बनी विविध प्रकार की खाद्य पदार्थ बनाते हैं और टीन के डिब्बों में देश विदेश को भेजते हैं। इस से हमारा डॉलर कोष की वृद्धि होती है।**

**VI.** **किसी राष्ट्रीय पर्व के बारे में ओड़िआ में एक अनुच्छेद लिखिए।**

## टिप्पणियाँ

**I.** **(इस पाठ में निम्न प्रकार के वाक्यों का प्रयोग हुआ है।**

(1)

1. ଆପଣ ବାହୁଡ଼ା ଦିନ ଯଦି ପୁରୀ **यदि आप 'बाहुड़ा' के दिन पुरी जाएँगें, तो**
ଯିବେ ତେବେ ମୁଁ ଯିବି। **मैं भी जाऊँगा।**
**आपण बाहुड़ा दिन जदि पुरी**
**जिबे, तेबे मुँ जिबि।**

2. ଆମକୁ 'ରଥଯାତ୍ରା' ବିଷୟରେ ଯଦି **यदि आप (हमें/हमको) 'रथयात्रा' के संबंध**
କିଛି କହନ୍ତେ ତେବେ ଭାରି ଭଲ ହୁଅନ୍ତା। **में कुछ बताते (हैं) तो बहुत अच्छा होता।**
**आमकु 'रथजात्रा' बिषयरे जदि किछि**
**कहंते तेबे भारि भल हुअंता।**

3. ଆପଣଙ୍କ ସ୍ତ୍ରୀ ଯଦି, 'ବାହୁଡ଼ା' **यदि आपकी पत्नी 'बाहुड़ा' के दिन जा**
ଦିନ ଯାଇପାରନ୍ତେ ମୋ ସ୍ତ୍ରୀ ମଧ୍ୟ **सकती हैं तो मेरी पत्नी भी जापातीं।**
ଯାଇପାରନ୍ତେ।
**आपणंक स्ती जदि, बाहुड़ा**
**दिन जाइपारन्ते मो स्ती मध्य जाइपारंते।**

4. ଆପଣ ଗଲେ ହିଁ ଆମେ ଯିବୁ। **आप के जानेपर ही हम जाएँगे।**
**आपण गले हिं आमे जिबु।**

5. ଆପଣମାନେ ନଗଲେ ଆମେ ମଧ୍ୟ **आप लोग नहीं गए (जाएँगे) तो हम भी**
ଯିବୁନି। **नहीं जाएँगे।**
**आपणमाने नगले आमे मध्य जिबुनि।**

(2)

1. ତୁମେ ଯଦି ଯାଇଥାଆନ୍ତ ତେବେ **यदि तुम गए होते तो देखते वह दृश्य**
ଦେଖିଥାଆନ୍ତ ସେ ଦୃଶ୍ୟ କେଡ଼େ **कितना मन लुभानेवाला था।**
ମନଲୋଭା ।
**तुमे जदि जाइथाआन्त तेबे**

देखिथाआन्त से दृश्य केड़े मनलोभा।

2. ଆମକୁ କହିଥିଲେତ ଆମେ ବି ଯାଇଥା'ନ୍ତୁ। — हम को कहा होता, तो हम भी गए होते।

आमकु कहिथिलेत आमे बि जाइथान्तु।

(**I.**1) और (**I.**2) में दिए गए वाक्य यथाक्रम ओड़िआ के हेतुमद् वाक्य तथा हेतु हेतु मद भुतकाल के वाक्य हैं। ये हिंदी के "अगर, यदि..... तो" के समान शर्तवाले वाक्य हैं। ओड़िआ में इसके लिए 'ଯଦି' (जदि) और 'ତେବେ' (तो) का प्रयोग होता है। इस प्रकार के वाक्यों में उपवाक्य 'ମୁଁ ଯଦି ଯିବି' (मुँ जदि जिबि) 'यदि मैं जाऊँगा' कारणवाचक है और 'ତେବେ ମୁଁ ଯିବି' (तेबे मुँ जिबि) 'तो मैं जाऊँगा' उपवाक्य परिणाम संबंध है। इन दोनें उपवाक्यों में कार्य-कारण का संबंध होता है। इस तरह के वाक्यों में कभी कभी क्रियाओं का काल भी बदल सकता है, जैसे: ((**I**,1.5) वाक्य के स्वतंत्र उपवाक्य में 'ଗଲେ' (गले) 'गए' का प्रयोग होते हुए भी दूसरे उपवाक्य में 'ଯିବୁ' (जिबु) 'जाएँगे' का प्रयोग हुआ है। 'ଗଲେ' (गले) 'गए' क्रिया भूतकालिक होते हुए भी भविष्यत काल का बोध कराती है।

## II. ओड़िआ महीनों के नाम।

| | | | |
|---|---|---|---|
| ବୈଶାଖ | वैशाख | କାର୍ତ୍ତିକ | कार्तिक |
| ଜ୍ୟେଷ୍ଠ | ज्येष्ठ | ମାର୍ଗଶୀର | मार्गशीर्ष |
| ଆଷାଢ଼ | आषाढ | ପୌଷ | पौष |
| ଶ୍ରାବଣ | सावन | ମାଘ | माघ |
| ଭାଦ୍ରବ | भादों | ଫାଲଗୁନ | फागुन |
| ଆଶ୍ୱିନ | आश्विन | ଚୈତ୍ର | चैत्र |

## III.

रथयात्रा

ओड़िआ का एक प्रसिद्ध त्योहार 'रथयात्रा' है। आषाढ़ की शुक्ल द्वितीय तिथि को 'रथयात्रा' मनाई जाती है। उसी दिन जगन्नाथ, बलभद्र और सुभद्रा के रथों की यात्राएँ होती हैं।

गुंडिचा मंदिर

गुंडिचा पुरी के जगन्नाथ मंदिर के पास एक मंदिर है। यह भगवान की मौसी का घर है। 'रथयात्रा' के समय यहाँ नौ दिन तक रथ रहता है, बाद में 'बाहुड़ा' यात्रा होती है।

दइतापति

जगन्नाथ मंदिर के कुछ सेवकों को 'दइता पति' कहा जाता है। वे लोग 'जारा' के वंशधर हैं।

जारा
एक शबर जाति जिस के पूर्वज जगन्नाथ के भक्त थे।

पहंडि
'रथयात्रा' के समय रथ के ऊपर जगन्नाथ को लाते समय हिला-हिला कर लाना।

बड़दांड़
जगन्नाथ मंदिर के सामने के रास्ते को 'बड़दांड' कहा जाता है।

बडदेउल
जगन्नाथ के मंदिर को 'बडदेउल' कहा जाता है।

आनंद बजार
पूरी मंदिर के अंदर जो पूजा-बजार है, उसे आनंद बज़ार कहा जाता है।

कल्पबट
पुरी मंदिर में एक वटवृक्ष है, जहाँ अपनी कामना पूरी करने के लिए लोग प्रार्थना करते हैं।

सालबेग
जगन्नाथ के परम भक्त एक मुसलमान का नाम। इनकी लिखी हुई हज़ारों 'जगन्नाथ-जणाण' हैं।

जगन्नाथ जणाण
भगवान के समक्ष आत्मनिवेदन संबंधी कविताएँ।

महाप्रसाद, निर्माल्य
जगन्नाथ के प्रसाद को 'महाप्रसाद' कहते हैं और सूखे हुए अन्न भोग को 'निर्माल्य' कहा जाता है।

# ପାଠ 20
# पाठ

## ତେବେ ଆଉ ଏବେ
## तेबे आउ एबे

ସୁଜାତା : ଅଜା, ନମସ୍କାର । ଆପଣ କୁଆଡ଼େ ଯାଉଛନ୍ତି କି ?

ଅଜା : ମୁଁ ଏଇ ବସ୍ ଷ୍ଟାଣ୍ଡକୁ ଯାଉଛି । ତୁ କୁଆଡ଼େ ଯିବୁ କିଲୋ ସୁଜାତା?

ସୁଜାତା : ରେଭେନ୍‌ସା କଲେଜରେ ଆଜି ମୋର ଏମ.ଏ. ପରୀକ୍ଷା । ମୁଁ କଟକ ଯାଉଛି ।

ଅଜା : ତୁ ପରା ମାଷ୍ଟ୍ରାଣୀ ହେଲୁଣି । ପୁଣି ପରୀକ୍ଷା ଦଉଛୁ କ'ଣ ?

ସୁଜାତା : ଯଦି ଚାକିରୀ କରି ପରୀକ୍ଷା ଦେଲି, ତେବେ କ'ଣ କିଛି ଖରାପ ହେଲା ?

ଅଜା : ନାଇଁଲୋ ଝିଅ, ଭଲ କଥା । ଏବେତ କଲେଜ ଛତୁ ଫୁଟିଲା ଭଳି ଖୋଲା ହେଲାଣି । ଆମେ ଯେତେବେଳେ ପଢୁଥିଲୁ, ସେତେବେଳେ ଏଠାରେ ମାତ୍ର ରେଭେନ୍‌ସା କଲେଜ ଗୋଟିଏ ଥିଲା ।

ସୁଜାତା : ଅଜା, ଆପଣ କ'ଣ ଉତ୍କଳ

## तब और अब

सुजाता : नानाजी नमस्कार। आप कहाँ जा रहे हैं ?

नाना : मैं इस बस स्टैंड को जा रहा हूँ। लाड़ली सुजाता, तू कहाँ जाएगी?

सुजाता : रेभेन्सा कॉलेज में आज मेरी एम.ए.की परीक्षा है। मैं कटक जा रही हूँ।

नाना : तु मास्टरानी (अध्यापिका) हो गयी हो। तो फिर परीक्षा क्यों दे रही हो?

सुजाता : यदि मैंने नौकरी के साथ-साथ परीक्षा दी, तब क्या कुछ बुरा हुआ?

नाना : नहीं बिटिया, अच्छी बात है। अब तो कॉलेज छत्रक की भाँति खुल गए हैं। हम जब पढ़ते थे, तब यहाँ रेभेन्सा कॉलेज एक ही कॉलेज था।

सुजाता : नानाजी, क्या आप ने उत्कल विश्व विद्यालय से परीक्षा दी थी?

ବିଶ୍ୱବିଦ୍ୟାଳୟରେ ପରୀକ୍ଷା ଦେଇଥିଲେ?

ଅଜା : ଆଲୋ, ଉତ୍କଳ ବିଶ୍ୱବିଦ୍ୟାଳୟ ଥିଲା କେଉଁଠି ? ଆଜି ଯେଉଁଠି ତୁମ ବିଶ୍ୱବିଦ୍ୟାଳୟ, ସେଠି ତ ଜଙ୍ଗଲ ଥିଲା । ଆମେ ପାଟଣା ବିଶ୍ୱବିଦ୍ୟାଳୟରେ ପରୀକ୍ଷା ଦେଇଥିଲୁ ।

ସୁଜାତା : ଅଜା, ସେତେବେଳେ ଝିଅ ପିଲା ଆପଣଙ୍କ ସାଙ୍ଗରେ ପଢୁଥିଲେନା ?

ଅଜା : ଆଜି ଯେତେ ଝିଅ ପଢୁଛନ୍ତି, ସେତେବେଳେ ସେତେ ପଢୁନଥିଲେ ।

ସୁଜାତା : ଆପଣ ଯେବେ ଚାକିରୀ କରିଥିଲେ, ସେବେ ଦରମା କେତେ ଥିଲା ?

ଅଜା : ମୁଁ କହିଲେ ତୁ କ'ଣ ବିଶ୍ୱାସ କରିବୁ ? ପଚାଶ ଟଙ୍କାରେ ମୋର ପହିଲୁ ଚାକିରୀ ଆରମ୍ଭ ହୋଇଥିଲା । ତୁ ଏବେ କେତେ ଦରମା ପାଉଛୁ ?

ସୁଜାତା : ଏବେ ମୋ ଦରମା ୩୦୦୦ ଟଙ୍କା । ତା' ଉପରେ ମହଙ୍ଗା ଭତ୍ତା ଅଛି ।

ଅଜା : ସରକାର ଏତେ ଗୁଡାଏ ପଇସା ଦେଉଛି । କିନ୍ତୁ ପଢ଼ା

**नाना : बिटिया, तब उत्कल विश्व विद्यालय ही कहाँ था? आज जहाँ तुम्हारा विश्वविद्यालय है, वहाँ एक जंगल था। हम ने पटना विश्वविद्यालय से परीक्षा दी थी।**

**सुजाता : नाना, क्या उस समय लड़कियाँ भी आपके साथ पढ़ती थीं ?**

**नाना : अब जितनी लड़कियाँ पढ़ रही हैं, तब उतनी लड़कियाँ नहीं पढ़ती थीं।**

**सुजाता : जब आप नौकरी करते थे, तब वेतन कितना था?**

**नाना : मैं कहूँ तो क्या तु विश्वास करेगी? पचास रुपयों से मेरी पहली नौकरी शुरू हुई थी। तू अभी कितना वेतन पा रही हो?**

**सुजाता : अभी मेरा वेतन ३००० रुपए हैं। उस के अतिरिक्त महँगाई भत्ता भी है।**

**नाना : सरकार इतना पैसा दे रहा है; लेकिन पढ़ाई ठीक-ठीक नहीं हो रही है। बच्चे हर समय (हमेशा) ट्यूशन पर निर्भर रहते हैं।**

**सुजाता : आप ने कहा कि पचास रुपयों से आप ने नौकरी शुरू की थी। अब**

ଠିକ୍ ଠିକ୍ ହୋଇ ପାରୁନାହିଁ । ପିଲାମାନେ ସବୁବେଳେ ଟ୍ୟୁସନ୍ ଉପରେ ନିର୍ଭର କରୁଛନ୍ତି ।

**हम जितना पाते हैं, उतना ही कम है।**

ସୁଜାତା : ଆପଣ କହିଲେ ପରା ପଚାଶ ଟଙ୍କାରେ ଆପଣ ଚାକିରୀ ଆରମ୍ଭ କରିଥିଲେ । ଏବେ ଆମେ ଯେତେ ପାଇଲେ ବି ସେତେ ନିଅଣ୍ଟ ।

**नाना : यह बात नहीं है। उस समय जो शिक्षा देते थे वे शिक्षण को पवित्र कर्तव्य समझते थे। आज वह कर्तव्य बोध नहीं है या (आजकल) कर्तव्य बोध होनेपर भी पढ़ाने का वातावरण नहीं है। जहाँ तक मैं समझता हूँ वहाँ तक ट्युशन ने शिक्षा को व्यवसायीक बना दिया है।**

ଅଜା : କଥାଟା ତାହା ନୁହଁ । ସେତେବେଳେ ଯେଉଁମାନେ ପାଠ ପଢ଼ାଉଥିଲେ, ସେମାନେ ଶିକ୍ଷାଦାନକୁ ପବିତ୍ର କର୍ତ୍ତବ୍ୟ ବୋଲି ଭାବୁଥିଲେ । ଆଜି ସେଇ କର୍ତ୍ତବ୍ୟବୋଧ ନାହିଁ, କିମ୍ବା କର୍ତ୍ତବ୍ୟବୋଧ ସତ୍ତ୍ୱେ ଶିକ୍ଷା ଦାନର ପରିବେଶ ନାହିଁ । ଯେତେଦୂର ମୁଁ ବୁଝିଛି ସେତେଦୂର ଟିଉସନ୍ ହିଁ ଆଜି ଶିକ୍ଷାକୁ ବ୍ୟବସାୟିକ କରିଦେଲା ।

**सुजाता : नाना, जो आप कह रहे हैं, मैं भी उससे सहमत हूँ। क्या आप कह रहे हैं कि शिक्षा की गिरावट के लिए शिक्षक अकेले ही उत्तरदायी हैं?**

ସୁଜାତା : ଅଜା, ଆପଣ ଯୋଉ କଥା କହୁଛନ୍ତି, ମୋର ବି ସେଥିରେ ଏକମତ । ଆପଣ କ'ଣ କହୁଛନ୍ତି ଶିକ୍ଷାର ସ୍ତର ଅଧୋଃପତନ ପାଇଁ ଖାଲି କ'ଣ ଶିକ୍ଷକ ଦାୟୀ?

**नाना : नहीं, इसकेलिए केवल शिक्षक ही नहीं, हमारी शिक्षा व्यवस्था और अभिभावक भी उत्तरदायी हैं।**

**सुजाता : नाना देखिए, बातों-बातों में समय निकल गया। हमारे पहुँचते ही गाड़ी भी आ गयी।**

ଅଜା : କେବଳ ଶିକ୍ଷକ ନୁହନ୍ତି, ଆମର ଶିକ୍ଷା ବ୍ୟବସ୍ଥା ଓ

**नाना : अच्छा, जब तू रेभेन्सा कॉलेज के**

| | |
|---|---|
| ଅଭିଭାବକମାନେ ବି ଏଥିପାଇଁ ଦାୟୀ । | होस्टल जाओगी तो हमारी पोती जानकी से मुलाकात कर लेना, यदि समय मिला, तो। |
| ସୁଜାତା : ଅଜା ଦେଖନ୍ତୁ, କଥା କଥାରେ ସମୟ ଚାଲିଗଲା । ହେଇ ଆମେ ପହଁଞ୍ଚିବା ମାତ୍ରେ ଗାଡ଼ି ମଧ୍ୟ ଆସିଗଲାଣି । | सुजाता : जरूर नानाजी। आप जो कहेंगे वह मैं करूँगी। क्या अब मैं जा सकती हूँ? |
| ଅଜା : ଆଚ୍ଛା, ଯେତେବେଳେ ତୁ ରେଭେନ୍ସା କଲେଜର ହଷ୍ଟେଲକୁ ଯିବୁ ତେବେ ଆମର ନାତୁଣୀ ଜାନକୀକୁ ଦେଖା କରିବୁ, ଯଦି ସମୟ ମିଳିବ । | नाना : हाँ, ठीक है बेटी, भगवान तुम्हारा भला करे। जीवन की सभी परीक्षाओं में तुम्हें सफलता मिले। |
| ସୁଜାତା : ନିଶ୍ଚୟ ଅଜା । ଆପଣ ଯାହା କହିବେ ତାହା ମୁଁ କରିବି । ମୁଁ ଏବେ ଯାଇପାରେକି ? | |
| ଅଜା : ଠିକ ଅଛି ଝିଅ । ଭଗବାନ ତୋର ମଙ୍ଗଳ କରନ୍ତୁ । ଜୀବନର ସବୁ ପରୀକ୍ଷାରେ ତୁମକୁ ସଫଳତା ମିଳିବ । | |

## शब्दार्थ

| ओड़िआ शब्द | हिंदी अर्थ |
|---|---|
| ଅଜା | नाना |
| ମାଷ୍ଟ୍ରାଣୀ | मास्टरानी, अध्यापिका |
| ଚାକିରୀ | नौकरी |
| ଛତୁ ଫୁଟିବା ଭଳି | छत्रक की भाँति, कुकुरमुत्ते की भाँति |
| ଯେତେବେଳେ | जिस समय, जब |

| | |
|---|---|
| ସେତେବେଳେ | **उस समय, तब** |
| ଯେଉଁଠି | **जहाँ** |
| ସେଠି | **वहाँ** |
| ଯେତେ | **जितना** |
| ସେତେ | **उतना** |
| ଯେବେ | **जब** |
| ସେବେ | **तब** |
| ଦରମା | **वेतन** |
| ପହିଲୁ | **पहला** |
| ଆରମ୍ଭ | **शुरु, आरंभ** |
| ମହଙ୍ଗାଭତ୍ତା | **महँगाई भत्ता** |
| ପରା | **कि** |
| ଯେତେଦୂର | **जहाँ तक** |
| ଏକମତ | **सहमत** |
| ପରିବେଶ | **वातावरण** |
| ଦେଖା କରିବା | **मुलाकात करना** |
| ଜୀବନରେ | **जीवनमें** |
| ସବୁ ପରୀକ୍ଷାରେ | **सब परीक्षाओं में** |
| ସଫଳତା | **सफलता** |

ଅଭ୍ୟାସ

## अभ्यास

**I.** 1) ନିମ୍ନରେ ଦିଆଯାଇଥିବା ବାକ୍ୟ ଅଭ୍ୟାସ କରନ୍ତୁ ।
**(नीचे दिए गए वाक्य दोहराइए।)**

1. ଯଦି ଚାକିରୀ କରି ପରୀକ୍ଷା ଦେଲି, ତେବେ କ'ଣ କିଚ୍ଛି ଖରାପ ହେଲା ?
2. ଯଦି ସେ ଯିବ ତେବେ ମୁଁ ଯିବି ନାହିଁ ।
3. ଯଦି ସେ ଯିବ, ତେବେ ମୁଁ ଯିବି ।

4. ଆମେ ଯେତେବେଳେ ପଢୁଥିଲୁ, ସେତେବେଳେ ଏଠାରେ ମାତ୍ର ଗୋଟିଏ କଲେଜ ଥିଲା ।
5. ଯେତେବେଳେ ଯାହା କରିବା କଥା ସେତେବେଳେ ତାହା କର ।
6. ତୁମେ ଯେତେବେଳେ ଡାକିବ ମୁଁ ନିଶ୍ଚୟ ଯିବି ।
7. ଆଜି ଯେଉଁଠି ବିଶ୍ୱବିଦ୍ୟାଳୟ, କାଲି ସେଇଠି ଜଙ୍ଗଲ ଥିଲା ।
8. ତୁମେ ଯେଉଁଠିକି ଯାଉଛ, ମୁଁ ସେଇଠିକି ଯାଉଛି ।
9. ଯେଉଁଠି ଜାନକୀ ରହୁଛି, ସେଇଠି ମୁଁ ମଧ୍ୟ ରହୁଛି ।
10. ଆଜି ଯେତେ ଝିଅ ପଢୁଛନ୍ତି, ସେତେବେଳେ ସେତେ ପଢୁନଥିଲେ ।
11. ଯେମିତି ଠାକୁର ସେମିତି ପୂଜା ।
12. ଯେମିତି ପାଠ ପଢ଼ିବୁ ସେମିତି ଫଳ ପାଇବୁ ।
13. ଆଜି ଯେତେ ପଇସା ପାଇଲେ ବି ସେତେ ନିଅଣ୍ଟ ।
14. ଆପଣ କହିଲେ ପରା ପଚାଶ ଟଙ୍କାରେ ଆପଣ ଚାକିରୀ କରିଥିଲେ ।
15. ମୁଁ ଯେତେ ଜାଗା ବୁଲିଛି, ସେତେ ଜାଗା କେହି ବୁଲି ନାହାନ୍ତି ।
16. ଦେଖ, କଥା କଥାରେ ସମୟ ଚାଲିଗଲା ।
17. ଦେଖ, ମଜା ମଜାରେ ଦିନ କଟିଗଲା ।
18. ଦେଖ, ହସ ହସରେ କାମ ସରିଗଲା ।

**II.** ବନ୍ଧନୀ ମଧ୍ୟରୁ ଉପଯୁକ୍ତ ସଂଯୋଜକ ପଦ ବାଛି ଶୂନ୍ୟ ସ୍ଥାନ ପୂରଣ କରନ୍ତୁ।
**(कोष्ठक में दिए गए उपयुक्त संयोजक अव्यय शब्द चूनकर वाक्य पूरे कीजिए ।)**

(ଯେଉଁ...... ସେଇ, ଯେତେବେଳେ.......ସେତେବେଳେ, ଯେତେ......ସେତେ, ଯେ......ସେ, ଯଦି)

1. ତୁମେ _____ ଶାଢ଼ୀଟି କିଣିଥିଲ, _____ ଟି ହଜି ଯାଇଛି ।
2. ଆଜି _____ ରାଜେନ୍ଦ୍ର, କାଲି _____ ଫକୀର ।
3. ତୁମେ ______ ଡାକୁଥିଲ, ସେ ______ ଶୋଇଥିଲା ।
4. ସେ _____ ଆସିଥାନ୍ତା, ମୋତେ ସାହାଯ୍ୟ କରିଥାନ୍ତା ।
5. ରାତି ____ ବଢୁଛି, ବର୍ଷା _____ ବଢୁଛି ।

**III.** ବନ୍ଧନୀରେ ଦିଆ ଯାଇଥିବା ହିନ୍ଦୀ ସଂଯୋଜକ ପଦର ସମାନାର୍ଥକ ଓଡ଼ିଆ ସଂଯୋଜକ ଦ୍ୱାରା ଶୂନ୍ୟ ସ୍ଥାନ ପୂରଣ କର ।
**(कोष्ठक में दिए गए हिंदी संयोजक अव्यय शब्दों के समानार्थक ओड़िआ संयोजक अव्यय शब्दों के द्वारा वाक्य पूरे कीजिए ।)**

1. ଆପଣ _____ ଆସିବେ, ମୁଁ _____ ଯିବି । **(यदि.... तो)**
2. ମୁଁ _____ ପଢ଼ୁଥିଲି _____ ବର୍ଷା ହେଉଥିଲା । **(जब..... तब)**
3. ଆଜି _____ ସହର ଦେଖୁଛୁ, ସେ ଦିନ _____ ଜଙ୍ଗଲ ଥିଲା । **(यहाँ..... वहाँ)**
4. ମାଉସୀ କହିଲେ _____ ସେ ମେଳାକୁ ଯିବେ ନାହିଁ । **(कि)**
5. କବି _____, _____ ନିଶ୍ଚୟ ଭାବପ୍ରବଣ ।

**(जिन्हाने....उन्होने)**

**IV.** 'କ' ସ୍ତମ୍ଭର ବାକ୍ୟଖଣ୍ଡ ସହ 'ଖ' ସ୍ତମ୍ଭର ଉପଯୁକ୍ତ ବାକ୍ୟଖଣ୍ଡ ଯୋଗ କରି ପୂର୍ଣ୍ଣ ବାକ୍ୟ ଗଠନ କରନ୍ତୁ ।

**('क' स्तंभ के वाक्यखंड़ के साथ 'ख' स्तंभ के उपयुक्त वाक्यखंड़ जोड़ कर पूर्ण वाक्य बनाइए।)**

| (କ) | (ଖ) |
|---|---|
| ପଚାଶ ଟଙ୍କାରେ ମୋର | ଉପରେ ନିର୍ଭର କରୁଛନ୍ତି । |
| ପିଲାମାନେ ସବୁବେଳେ ଟ୍ୟୁସନ୍ | ମଙ୍ଗଳ କରନ୍ତୁ । |
| ଏବେ ଆମେ ଯେତେ | ବ୍ୟବସାୟିକ କରିଦେଲା । |
| ଟିଉସନ୍ ହିଁ ଶିକ୍ଷାକୁ | ପହିଲୁ ଚାକିରୀ ଆରମ୍ଭ ହୋଇଥିଲା । |
| ଭଗବାନ ତୁମର | ପାଇଲେ ବି ସେତେ ନିଅଣ୍ଟ । |

**V.** ଉଦାହରଣ ଅନୁସାରେ ନିମ୍ନଲିଖିତ ବାକ୍ୟ ଗୁଡ଼ିକୁ ପରିବର୍ତ୍ତନ କରନ୍ତୁ ।
**(उदाहरण के अनुसार निम्नलिखित वाक्यों का परिवर्तन कीजिए।)**

ଉଦାହରଣ :- ହଷ୍ଟେଲକୁ ଗଲେ ଜାନକୀକୁ ଦେଖା କରୁବୁ । (ଯଦି)
ଯଦି ହଷ୍ଟେଲକୁ ଯାଉ ତ ଜାନକୀକୁ ଦେଖା କରିବୁ ।

1. ତୁମେ ଡାକିଥାଆନ୍ତ ମୁଁ ଆସିଥାନ୍ତି । (ଯଦି)
2. ତୁମେ ଆସିବ ମୋତେ ଦେଖା କରିବ । (ଯେବେ)
3. ତାକୁ ଭୋକ କରିଥାଆନ୍ତା ସେ ଖାଇଥାଆନ୍ତା । (ଯଦି ...... ତେବେ)
4. ମୁଁ ଚିଠି ଦେବି ତୁମେ ଆସିବ । (ଯେବେ.......ସେବେ)
5. ତୁମେ ଯାଇଥାନ୍ତ ମୁଁ ବି ଯାଇଥାନ୍ତି । (ଯଦି .... ତେବେ)

**VI.** ଉଦାହରଣ ଅନୁଯାୟୀ ଦିଆ ଯାଇଥିବା ବାକ୍ୟ ଗୁଡିକୁ ନାସ୍ତିବାଚକ ବାକ୍ୟରେ ପରିଣତ କରନ୍ତୁ ।
**(उदाहरण के अनुसार दिए गए वाक्यों के निषेधवाचक वाक्य बनाइए।)**

ଉଦାହରଣ :- ତୁ ଯଦି କଟକ ଯାଉ, ତେବେ ତାକୁ ଦେଖା କରିବୁ ।
ତୁ ଯଦି କଟକ ଯାଉ, ତେବେ ତାକୁ ଦେଖା କରିବୁ ନାହିଁ ।
ତୁ ଯଦି କଟକ ନଯାଉ, ତେବେ ତାକୁ ଦେଖା କରିବୁ ନାହିଁ ।

1. ଯଦି ତୁମେ ଖେଳ ଦେଖି ଯିବ, ତେବେ ମୁଁ ଯିବି ।
2. ତୁମେ ଯଦି ଆସିବ ମୋ ବହି ଖଣ୍ଡିକ ଆଣିବ ।
3. ମୋତେ ଯଦି ଭୋକ କରୁଥାଆନ୍ତା, ତେବେ ମୁଁ ଖାଇଥାଆନ୍ତି ।
4. ଯଦି ଜଗଜିତ୍ ମନ ଭଲ ଥାଆନ୍ତା, ତେବେ ସେ ଆସିଥାଆନ୍ତା ।
5. ଯଦି ତୁ ରେଭେନ୍ସା କଲେଜ୍ ଯିବୁ, ତେବେ ଜାନକୀକୁ ଦେଖା କରିବୁ ।

**VII.** ଉଦାହରଣ ଅନୁଯାୟୀ ଦିଆ ଯାଇଥିବା ନାସ୍ତିବାଚକ ବାକ୍ୟକୁ ଅସ୍ତିବାଚକ ବାକ୍ୟରେ ପରିଣତ କରନ୍ତୁ ।

**(उदाहरण के अनुसार दिए गए नकरात्मक वाक्यों को सकरात्मक वाक्यों में परिवर्त्तन कीजिए।)**

ଉଦାହରଣ :- ଆଜି ଯେଉଁଠି ଘର ଦେଖୁଛୁ, ସେତେବେଳେ ସେଠି ଘର ନଥିଲା ।
ଆଜି ଯେଉଁଠି ଘର ଦେଖୁଛୁ ସେତେବେଳେ ସେଠି ଘର ଥିଲା ।

1. ଯେତେବେଳେ ମୁଁ ତାଙ୍କୁ ଡାକିଲି, ସେତେବେଳେ ସେ ଆସିଲେ ନାହିଁ ।
2. ତୁମେ ଯେଉଁଠିକି ଯାଅ, ମୋର ଅନୁମତି ନେବା ଦରକାର ନାହିଁ ।
3. ଯଦି ସେ ଯିବ, ତେବେ ମୁଁ ଯିବି ନାହିଁ ।
4. ତୁମେ ଯଦି ଯିବ, ସେବେ ମୋ ଠାରୁ ଚିଠି ନେବ ନାହିଁ ।
5. ତୁ ଯେତେ ଖାଇବୁ, ମୁଁ ସେତେ ଦେଇ ପାରିବି ନାହିଁ ।

**VIII.** ଉଦାହରଣ ଅନୁଯାୟୀ ଦିଆ ଯାଇଥିବା ପ୍ରତ୍ୟେକ ବାକ୍ୟକୁ ଅଲଗା ଅଲଗା ବାକ୍ୟରେ ପରିଣତ କରନ୍ତୁ।

**(उदाहरण के अनुसार दिए गए प्रत्येक वाक्य को अलग अलग वाक्यों में परिवर्त्तन कीजिए।)**

ଉଦାହରଣ :- ଯେତେବେଳେ ମୁଁ ପଢୁଥିଲି, ସେତେବେଳେ ଗୋଟିଏ କଲେଜ ଥିଲା ।
1- ମୁଁ ପଢୁଥିଲି ।
2- ଗୋଟିଏ କଲେଜ ଥିଲା ।

1. ଆଜି ଯେଉଁଠି ବିଶ୍ୱବିଦ୍ୟାଳୟ ଅଛି ସେଦିନ ସେଠି ଜଙ୍ଗଲ ଥିଲା ।
2. ଆଜି ଯେତେ ଝିଅ ପଢୁଛନ୍ତି, ସେତେବେଳେ ଏତେ ପଢୁନଥିଲେ ।

3. ସେ ଯେଉଁଠି ରହୁଛି ମୁଁ ମଧ୍ୟ ରହୁଛି ।
4. ତୁମେ କହିଲ ପରା ପଚାଶ ଟଙ୍କାରେ ତୁମେ ଚାକିରୀ କରିଥିଲ ।
5. ଯଦି ତୁମେ ମନପ୍ରାଣ ଦେଇ ଭଗବାନଂକୁ ପ୍ରାର୍ଥନା କର ତେବେ ନିଶ୍ଚୟ ତୁମର ଦୁଃଖ ଦୂର ହେବ ।
6. ଯେଉଁ ଛାତ୍ରମାନେ ପରିଶ୍ରମ କରନ୍ତି, ସେମାନେ ପରୀକ୍ଷାରେ କୃତକାର୍ଯ୍ୟ ହୋଇଥାଆନ୍ତି ।
7. ଯେ ସବୁବେଳେ ନ୍ୟାୟପଥରେ ଥାଆନ୍ତି, ସେ ସର୍ବଦା ଭଗବାନଂକ କୃପା ଲାଭ କରନ୍ତି ।
8. ବଂଶରେ ଯଦି କେହି ନାହାଁନ୍ତି, ତେବେ ସେ ସଂପତିର କି ପ୍ରୟୋଜନ ?
9. ଯଦି ଚାକିରୀ କରି ପରୀକ୍ଷା ଦେଲି, ତେବେ କ'ଣ କିଛି ଖରାପ ହେଲା ?
10. ଯେଉଁମାନେ ପାଠ ପଢ଼ାଉଥିଲେ, ସେମାନେ ଶିକ୍ଷାଦାନକୁ ପବିତ୍ର କର୍ତ୍ତବ୍ୟ ବୋଲି ଭାବୁଥିଲେ ।

ପଢ଼ନ୍ତୁ ଓ ବୁଝନ୍ତୁ

## କେଦାର ଗୌରୀ
## केदार गौरी

ଯେତେବେଳେ ଭୁବନେଶ୍ୱର ଜଙ୍ଗଲ ଥିଲା ସେତେବେଳେ ଏଇ ଘଟଣା ଘଟିଥିଲା । ଲିଙ୍ଗରାଜ ମନ୍ଦିରର ଅନତି ଦୂରରେ ଜଣେ ସୌଦାଗର ବାସ କରୁଥିଲେ । ତାଙ୍କର ଗୋଟିଏ ବୋଲି ଅଲିଅଳ ଝିଅ ଥିଲା । ଝିଅଟି ଅନିନ୍ଦ୍ୟ ସୁନ୍ଦରୀ ଥିଲା । ସତେ ଯେମିତି ଗୋଟିଏ ଚାଉଳରେ ଗଢ଼ା । ବାପା ମା' ଆଦରରେ ନାଁ ଦେଇଥିଲେ ଗୌରୀ । ଯେଉଁଠି ଗୌରୀ ରହୁଥିଲା ସେଇଠି ଏକ ସୁନ୍ଦର ପରିବେଶ ଥିଲା ।

ପାଖ ଗାଁରେ ଚାଷୀଟିଏ ଥିଲା । ସ୍ୱାମୀ ସ୍ତ୍ରୀ ଦୁହେଁ ମିଶି କ୍ଷେତରେ କାମ କରୁଥିଲେ ଓ ପେଟ ପୋଷୁଥିଲେ । ଦୁହେଁ କେତେ ଦିଅଁ ଦେବତାଙ୍କୁ ପୂଜା କରିକରି ପୁଅଟିଏ ପାଇଥିଲେ । ସତେ ଯେମିତି ରଜାଘର କୁମର । ନାଁ ତା'ର କେଦାର ଥିଲା । ସିଏ ଯେତେ ସ୍ନେହ ପାଉଥିଲା ସେତେ ଆଦର ମଧ୍ୟ ପାଉଥିଲା । ସେ ଥିଲା ବାପାମାଆଙ୍କର ନୟନର ପିତୁଳା ।

ଧୀରେ ଧୀରେ ସମୟ ଗଡ଼ି ଚାଲିଲା । ପିଲା ଦୁଇଟି ବଡ଼ ହୋଇ ଯୌବନରେ ପାଦ ଦେଲେ । ଯେତେବେଳେ କେଦାର ଲିଙ୍ଗରାଜ ମନ୍ଦିରକୁ ଯାଉଥିଲା ସେତେବେଳେ ଗୌରୀ ମଧ୍ୟ ଲିଙ୍ଗରାଜଙ୍କୁ ଦର୍ଶନ କରିବାକୁ ଆସୁଥିଲା । ଧୀରେ ଧୀରେ ପ୍ରତ୍ୟେକ ପ୍ରତ୍ୟେକର ରୂପ ଲାବଣ୍ୟରେ ଆକର୍ଷିତ ହେଲେ । ହେଲେ ଯେବେ ସେମାନେ କଥା ହେବାପାଇଁ ଚାହୁଁଥିଲେ

ତେବେ ତାଙ୍କୁ ସୁଯୋଗ ମିଳୁନଥିଲା ।

ସେଦିନ ଲିଙ୍ଗରାଜଙ୍କ ଜାଗର ଯାତ୍ରା ଥିଲା । ଲୋକ ଗହଳି ଭିତରେ କେଦାର ଓ ଗୌରୀ ଦୁହିଁଙ୍କର ଭେଟ ହେଲା । ସେଇଠି ଏକ ନିକାଞ୍ଚନ ସ୍ଥାନ ସ୍ଥିର କଲେ ଯେଉଁଠି ସେମାନେ ମନଖୋଲି କଥା ପଦେ ହୋଇପାରିବେ । ମନ୍ଦିରର ଅନତି ଦୂରରେ ଯେଉଁଠି ଗଚ୍ଛଲତା ପୂର୍ଣ୍ଣ ଏକ ସ୍ଥାନ ସେଇଠି ଏକ ଜଳାଶୟ ମଧ୍ୟ ଥିଲା, ତାହା ଥିଲା ଉଭୟଙ୍କ ମିଳନସ୍ଥଳୀ ।

ସେଦିନର ସଞ୍ଜ ନଇଁ ଆସିଥିଲା । ଉତ୍କଣ୍ଠିତ କେଦାର ଗୌରୀର ସାକ୍ଷାତ୍ ପାଇଁ ଧାଇଁ ଧାଇଁ ଆସିଥିଲା ସେଇ ନିବିଡ଼ ଲତା କୁଞ୍ଜକୁ । ସେଇଠି ହଠାତ୍ ଦେହ ତା'ର ଶିହରୀ ଉଠିଲା । କାରଣ ସେତେବେଳେ ସେ ଦେଖିଲା ବାଘଟାଏ ଚାଲି ଯାଉଛି ଜଙ୍ଗଲ ଭିତରକୁ । ଏକ ଅହେତୁକୀ ଆଶଙ୍କାରେ ହୃଦୟ ତା'ର ଥରି ଉଠିଲା । ନିରୂପିତ ମଧୁମାଳତୀ କୁଞ୍ଜ ଆଡ଼େ ଆଗେଇ ଯାଉଯାଉ ଗୋଡ଼ ତା'ର ଅଟକି ଯାଉଥିଲା । ଏ କ'ଣ ? ରକ୍ତଭିଜା ଲୁଗା, ରକ୍ତ ବୋଳା ମାସଂ ଖଣ୍ଡ । ତା' ଚିର ଆକାଂକ୍ଷିତା ଗୌରୀ କ'ଣ ତେବେ ତା' ପାଇଁ ବାଘ ମୁହଁରେ ଜୀବନ ଦେଇଦେଲା ? ଚଉଦିଗ ଅନ୍ଧାର ଦେଖାଗଲା କେଦାରକୁ । ଆଉ ଏ ବୃଥା ଜୀବନ ରଖି ଲାଭ କ'ଣ ? ଶେଷରେ ସେଇ ଗଭୀର ଜଳାଶୟକୁ ଡେଇଁ ପଡ଼ିଲା । ଜୀବନ ଦୀପ ତା'ର ଲିଭିଗଲା ।

ଠିକ୍ ସେତିକିବେଳକୁ ଗୌରୀ ଘରକାମ ସାରି ଆସୁ ଆସୁ ଟିକେ ଡେରି ହୋଇଗଲା । ମଝିରେ ମଝିରେ ପାଖ ଜଙ୍ଗଲରୁ ବାଘର ଗର୍ଜନ ଶୁଭୁଥିଲା । ସେଥିକି ଖାତିର ନାହିଁ ତା'ର । ଉନ୍ମନା ଗୌରୀ ଆଗେଇଗଲା ସେଇ ଲତା କୁଞ୍ଜ ଆଡ଼େ । ହଠାତ୍ ସେ ଚମକି ଉଠିଲା । ଭୟରେ ସେ ହତ୍‌ବାକ୍ ହୋଇଗଲା । ରକ୍ତ ଭିଜା ଲୁଗା, ରକ୍ତବୋଳା ତାଜା ମାଂସ । ତାହେଲେ କ'ଣ କେଦାର ଆଉ ନାହିଁ ? ତା'ରି ପାଇଁ ସେ ବାଘ ମୁହଁରେ ଜୀବନ ଦେଇଦେଲା । ଯେତେବେଳେ ଏଇ ଘଟଣା ଦେଖିଲା ସେ ଭାବିଲା ସେତେବେଳେ ଆଉ ଏ ଜୀବନ ରଖି ଲାଭ କ'ଣ ? ଯେମିତି କେଦାର ଜଳାଶୟ ଭିତରକୁ ଡ଼େଇଁ ପଡ଼ିଥିଲା ସେମିତି ପାଗଳିନୀ ଗୌରୀ ଜଳାଶୟ ଭିତରକୁ ଡ଼େଇଁ ପଡ଼ିଲା ।

ଚାରିଆଡ଼େ ରାତ୍ରୀର ଅନ୍ଧକାର ଘନେଇ ଆସିଲା । ତାରୁଣ୍ୟର ଦୁଇଟି କଳିକା ଅସମୟରେ ଝରି ପଡ଼ିଲେ ମହା ମିଳନର ଅସରନ୍ତି ପଥରେ ।

କେଦାର ଗୌରୀର ଏଇ ଅମର ପ୍ରେମ କାହାଣୀର ମୂକସାକ୍ଷୀ ଆଜି କେଦାର ଗୌରୀ ପୋଖରୀ ଓ କେଦାର ଗୌରୀ ମନ୍ଦିର । ଆଜି ବି ଏଇ ପୁଣ୍ୟତୋୟା, ସ୍ୱଚ୍ଛ ସଲୀଳା କେଦାର ଗୌରୀ ପୁଷ୍କରିଣୀରେ ଗାଧୋଇଲେ ଅଭିଳାଷ ପୂର୍ଣ୍ଣ ହେବାର ଲୋକ ବିଶ୍ୱାସ ଅଛି । ଅମୃତ ପ୍ରେମର ମୂର୍ତ୍ତିମନ୍ତ ପ୍ରତୀକ, ଧନ୍ୟ ତୁମେ କେଦାର ! ଧନ୍ୟ ତୁମେ ଗୌରୀ !

## शब्दार्थ

| ओड़िआ शब्द | हिंदी अर्थ |
|---|---|
| ଅନତି ଦୂର | समीप |
| ସୌଦାଗର | सौदागर |
| ଅଲିଅଳ | अति प्रिय, लाड़ला |
| ଅନିନ୍ଦ୍ୟ ସୁନ୍ଦରୀ | परम सुंदर, अनिंद्य सुंदर |
| ଗୋଟିଏ ଚାଉଳରେ ଗଢ଼ା | चावल दाने की तरह सुगढ़ (मुहावरा) अत्यंत सुंदर |
| ପେଟ ପୋଷିବା | जीवन यापन, पेट-पालन |
| ଦିଅଁ ଦେବତା | देव-देवता |
| ରଜାଘର କୁମର | (मुहावरा) राज कुमार के समान सुंदर |
| ନୟନର ପିତୁଳା | (मुहावरा) आखों का तारा, आँखों का पुतला |
| ଠାକୁର | देवता, ठाकुर |
| ଜାଗର ଯାତ୍ରା | जागर यात्रा |
| ଗହଳି | भीड़, रेला, रेल-पेल |
| ମନଖୋଲି କହିବା | उन्मुक्त अभिव्यक्ति |
| ନିକାଞ୍ଚନ | एकांत |
| ନିବିଡ଼ | निबिड़, घना |
| ବନାନୀ | वन, जंगल |
| ମଝି | केंद्र, मध्य |
| ଜଳାଶୟ | तालाब, जलाशय |
| ନିରୂପିତ | पहले से स्थिरीकृत स्थान |
| ମିଳନସ୍ଥଳୀ | मिलन स्थल |
| ଲତାକୁଞ୍ଜ | लता-कुंज |
| ହଠାତ୍ | तत्काल, तुरंत, अचानक |

| | |
|---|---|
| ଶିହରି ଉଠିଲା | **सिहर उठा** |
| ଅହେତୁକୀ ଆଶଙ୍କା | **अकारण भय** |
| ଥରି ଉଠିଲା | **काँपने लगा, थर्राया, थर्रा उठा** |
| ମଧୁମାଳତୀ | **मधुमालती (लता)** |
| ଅଟକିଗଲା | **रुक गया, अटक गया** |
| ରକ୍ତଭିଜା ଲୁଗା | **रक्त से भीगा वस्त्र** |
| ମାଂସ ଖଣ୍ଡ | **मांस का टुकड़ा** |
| ଚିର | **चिर, सदैव** |
| ଆକାଂକ୍ଷିତା | **इच्छा** |
| ଚଉଦିଗ | **चारों ओर** |
| ଗଭୀର | **गहरा** |
| ଲମ୍ଫଦେବା | **कूदना** |
| ଖାତିର | **खातिर** |
| ଉନ୍ମନା | **बावला** |
| ଚମକି ଉଠିଲା | **चमक उठा** |
| ହତ୍‌ବାକ୍ | **अवाक, स्तब्ध** |
| ମୁହଁ | **मुख** |
| ପାଗଳିନୀ | **पगली** |
| ଅନ୍ଧକାର | **अंधकार** |
| ତାରୁଣ୍ୟ | **तारुण्य, किशोरता** |
| କଳିକା | **कली** |
| ଝରି ପଡ଼ିବା | **मर गए** |
| ମୂକ ସାକ୍ଷୀ | **मूक दर्शक** |
| ପୂଣ୍ୟତୋୟା | **पवित्र जल (वाली)** |
| ସ୍ୱଚ୍ଛ ସଲୀଳା | **स्वच्छ जल (वाली)** |
| ପୁଷ୍କରିଣୀ | **तालाब** |
| ଅଭିଳାଷ | **अभिलाषा** |

| | |
|---|---|
| ପ୍ରବାଦ | **प्रवाद, उक्ति, जनश्रुति** |
| ମୂର୍ତ୍ତିମନ୍ତ | **जीवित रूप, जीता-जागता** |
| ପ୍ରତୀକ | **प्रतीक** |

## अभ्यास
## ଅଭ୍ୟାସ

**I.** ଅନୁଚ୍ଛେଦର ଆଧାର ଉପରେ ନିମ୍ନରେ ଦିଆଯାଇଥିବା ପ୍ରଶ୍ନର ଉତ୍ତର ଦିଅନ୍ତୁ।

**(अनुच्छेद के आधार पर नीचे दिए गए प्रश्नों के उत्तर दीजिए)**

1. ସୌଦାଗର କେଉଁଠି ବାସ କରୁଥିଲେ ?
2. ସୌଦାଗରଙ୍କ ଝିଅର ନାମ କ'ଣ ?
3. ପୁଅଟି ଦେଖିବାକୁ କେମିତି ?
4. କେଉଁ ଦିନ ଗୌରୀ ସହ କେଦାରର କଥାବାର୍ତ୍ତା ହେଲା ?
5. କେଦାରର ଦେହ କାହିଁକି ଶିହରୀ ଉଠିଲା ?
6. ଗୌରୀର ଡ଼େରିରେ ଆସିବାର କାରଣ କ'ଣ ?
7. ଗୌରୀ କାହିଁକି ହୃତ୍‌ବାକ ହୋଇଗଲା ?
8. କେଦାର ଗୌରୀଙ୍କ ଅମର ପ୍ରେମର ମୂକ ସାକ୍ଷୀ କିଏ ?

**II.** ପଠିତ ବିଷୟ଼ ଅବଲମ୍ବନରେ ଦିଆ ଯାଇଥିବା ବାକ୍ୟ ଗୁଡ଼ିକର କ୍ରମାନୁସାରେ ବାକ୍ୟଗୁଡ଼ିକୁ ଲେଖନ୍ତୁ।

**(नीचे दिए गए कथनों को उसी क्रम में क्रमबद्ध कीजिए जिस क्रम में उन का वर्णन अनुच्छेद में किया गया है।)**

1. ଝିଅଟି ଅନିନ୍ଦ୍ୟ ସୁନ୍ଦରୀ।
2. କେତେ ଦିଅଁ ଦେବତାଙ୍କୁ ପୂଜା କରିକରି ପୁଅଟିଏ ପାଇଛନ୍ତି।
3. ପ୍ରତ୍ୟେକ ପ୍ରତ୍ୟେକର ରୂପ ଲାବଣ୍ୟରେ ଆକର୍ଷିତ ହୁଅନ୍ତି।
4. ହଠାତ୍ ଦେହ ତା'ର ଶିହରୀ ଉଠିଲା।
5. ଭୟ଼ରେ ସେ ହତବାକ୍ ହୋଇଗଲା।
6. ରାତ୍ରୀର ଅନ୍ଧକାର ଘନେଇ ଆସିଲା।

7. ଏଇ ଅମର ପ୍ରେମ କାହାଣୀର ମୂକସାକ୍ଷୀ କେଦାର ଗୌରୀ ମନ୍ଦିର ।
8. ଯେତେବେଳେ କେଦାର ଲିଙ୍ଗରାଜ ମନ୍ଦିରକୁ ଯାଉଥିଲା ସେତେବେଳେ ଗୌରୀ ମଧ୍ୟ ଲିଙ୍ଗରାଜଙ୍କୁ ଦର୍ଶନ କରିବାକୁ ଆସୁଥିଲା ।
9. ସେଇଠି ନିକାଞ୍ଚନ ସ୍ଥାନ ସ୍ଥିର କଲେ ଯେଉଁଠି ସେମାନେ ମନଖୋଲି କଥାପଦେ ହୋଇପାରିବେ ।
10. ସିଏ ଯେତେ ସ୍ନେହ ପାଉଥିଲା ସେତେ ଆଦର ମଧ୍ୟ ପାଉଥିଲା ।

**III.** ହିନ୍ଦୀରେ ଅନୁବାଦ କରନ୍ତୁ ।
**(हिंदी में अनुवाद कीजिए।)**

ଏକ ସମୟ୍ରେ ଭାରତରେ ଯୁକ୍ତ ପରିବାର ଥିଲା । ଏହି ପରିବାର ମାନଙ୍କରେ ଦୁଇ ତିନି ପିଢ଼ୀର ଲୋକେ ଏକାଠି ରହୁଥିଲେ । ଏହା ଫଳରେ ଜନ୍ମଠାରୁ ମରଣଯାଏଁ ପ୍ରତ୍ୟେକ ଲୋକ ପରିବାରର ସମର୍ଥନ ପାଉଥିଲେ । କ୍ରମେ ଏହି ଯୁକ୍ତ ପରିବାର ଭାଙ୍ଗି ଏକକ ପରିବାର ସୃଷ୍ଟି ହେଲା । ଏହି ପରିବାରରେ ବାପା ବୋଉ ଓ ପିଲାମାନେ ସଭ୍ୟ ଥିଲେ । ଆଗ କାଳରେ ଗଳ୍ପ ଜରିଆରେ ପାରିବାରିକ ମୂଲ୍ୟବୋଧ ବୟୋଜ୍ୟେଷ୍ଠ ବ୍ୟକ୍ତିଙ୍କଠାରୁ ଆସୁଥିଲା । ସମସ୍ତେ ଭିନ୍ନ ହୋଇଯିବାରୁ
ବୁଢ଼ାବୁଢ଼ୀଙ୍କ ଦୁର୍ଦ୍ଦଶାତ ବଢ଼ିଗଲା ପିଲାଙ୍କର ସାମାଜିକକରଣ ମଧ୍ୟ ବାଧା ପାଇଲା । ଗଳ୍ପ କହିବାର ଧାରା ପରିବାରରେ ବନ୍ଦ ହୋଇଯିବାରୁ ନୂଆ ପିଢ଼ୀର ଲୋକେ ଏଥିପାଇଁ ସ୍କୁଲ ନିର୍ଭର ହୋଇଗଲେ ।

ଆଗେ ପର୍ବପର୍ବାଣୀ ମାନଙ୍କରେ ବହୁତ ପ୍ରକାରର ପିଠା ଓ ଖଜା କରାଯାଉଥିଲା । ସେତେବେଳେ ଘରେ ଖାଇବା ଭୋଜିପରି ଲାଗୁଥିଲା । ସବୁ ପର୍ବ ପର୍ବାଣୀରେ ପ୍ରସାଦ ବଣ୍ଟାଯାଉଥିଲା । ଏଥିରେ ଜାତି ଭେଦର ବିଚାର ନଥିଲା । ପର୍ବ ପର୍ବାଣୀରେ ସାନ ପିଲାମାନେ ବଡ଼ ମାନଙ୍କଠାରୁ ଯାତ୍ରା ପଇସା ନେଉଥିଲେ । ସେମାନେ ଯାତ୍ରା କିମ୍ବା ମେଳା ପଡ଼ିଆକୁ ଯାଇ ଏହି ପଇସାରେ ଖିଆପିଆ କରୁଥିଲେ ଓ ବିଭିନ୍ନ ପ୍ରକାରର ଛୋଟ ଛୋଟ ଖେଳଣାମାନ କିଣୁଥିଲେ । କେବେକେବେ ଯାତ୍ରା
ପଡ଼ିଆରେ ବାଣ ଫୁଟାଯାଉଥିଲା । ଏହା ଦେଖିବାକୁ ବଡ଼ସାନ ସମସ୍ତେ ଯାତ୍ରା ପଡ଼ିଆକୁ ଯାଉଥିଲେ ।

ସୂର୍ଯ୍ୟବାନ୍ଧବ ଭାରତୀୟ ପରିବାର ବିସ୍ତାରର ଅନ୍ୟ ଏକ ଦିଗନ୍ତ । ତେଲି, କେଉଟ, ଗୁଡ଼ିଆ, ଗଉଡ଼ ଯେଉଁ ଜାତିର ଲୋକ ହୁଅନ୍ତୁନା କାହିଁକି 'ମହାପ୍ରସାଦ' ଦେଇ ବଡ଼ଘରର ଝିଅ ବୋହୂଙ୍କ ସାଙ୍ଗରେ ସମ୍ବନ୍ଧ ବାନ୍ଧୁଥିଲେ । ସଙ୍ଗାତ, ମୈତ୍ର, ତୁଳସୀ, ଦଅଣା, ବଉଳ ବସିବା

ସେହିପରି ବଢ଼ନ୍ତା ପରିବାରର ଆଉ ଏକ ଲକ୍ଷଣ। ଏଇସବୁ ବିଭିନ୍ନ ଜାତିକୁ ଏକାଠି ବାନ୍ଧି ରଖିଥିଲା।

**IV.** ଓଡ଼ିଆରେ ଅନୁବାଦ କରନ୍ତୁ।
**(ओड़िआ में अनुवाद कीजिए।)**

**अनपढ़ व्यक्ति अंधे के समान हैं। जब तक पढ़ाई का प्रसार नहीं होगा तब तक दूर गाँव के लोग अनपढ़ रहेंगे। विश्वविद्यालय के छात्रों को गाँव-गाँव जाकर शिक्षा का प्रसार करना होगा। जबतक वे अपना दायित्व नहीं समझेंगे तब तक देश का कल्याण नहीं होगा।**

**जहाँ अनपढ का राज होता है वहाँ गरीबों का शोषण होता है। जो लोग राज करते हैं वे गरीबों की प्रगती के बारे में सिर्फ बोलते हैं। लेकिन कुछ करते नहीं। हमारा देश जितना बडा है उतना बडा है हमारा बोझ भी। गरीबी हटाने केलिए हम जितनी भी कोशिश करें उतनी कम ही रहेगी। इसलिए हम को चाहिए कि देश के कोने कोने में जो रहनेवाले हैं वे सब शिक्षित बनें। तब उन की शोषण करना आसान नहीं हो सकता। वे अपने अधिकारों तथा उत्तरदायित्व समझ भी सकेंगे। जिस राज्य के लोग अपने उत्तरदायित्व समझनेवाले हैं उस राज्य की उन्नति सुनिश्चित है।**

## टिप्पणियाँ

**I.** **निम्न वाक्यों पर ध्यान दिजिए।**

(1) 1. ଆମେ ଯେତେବେଳେ ପଢୁଥିଲୁ, ସେତେବେଳେ ଏଠାରେ ମାତ୍ର ଗୋଟିଏ ରେଭେନ୍‌ସା କଲେଜ ଥିଲା।

**हम जब पढ़ते थे, तब यहाँ रेभेन्सा कॉलेज एक ही कॉलेज था।**

**आमे जेतेबेळे पढ़ुथिलु, सेतेबेळे एठारे मात्र गोटिए रेभेन्सा कलेज थिला।**

2. ଆପଣ ଯେବେ ଚାକିରୀ କରିଥିଲେ, ସେବେ ଦରମା କେତେ ଥିଲା ?

**जब आप नौकरी करते थे तब वेतन कितना था ?**

**आपण जेबे चाकिरी करिथिले, सेबे दरमा केते थिला ?**

3. ସେତେବେଳେ ଯେଉଁମାନେ ପାଠ ପଢ଼ାଉଥିଲେ ସେମାନେ ଶିକ୍ଷାଦାନକୁ କର୍ତ୍ତବ୍ୟ ବୋଲି ଭାବୁଥିଲେ।

**उस समय जो शिक्षा देते थे वे शिक्षण को पवित्र कर्त्तव्य समझते थे।**

सेतेबेळे जेउँमाने पाठ पढ़ाउथिले सेमाने
शिक्षादानकु कर्त्तब्य बोलि भाबुथिले।

4. ଆଜି ଯେଉଁଠି ତୁମ ବିଶ୍ୱବିଦ୍ୟାଳୟ,
ସେଠି ଗୋଟାଏ ଜଙ୍ଗଲ ଥିଲା।
आजि जेउँठि तुम बिश्वबिद्यळय,
सेठि गोटाए जंगल थिला।

आज जहाँ तुम्हारा विश्वविद्यालय है,
वहाँ एक जंगल था।

5. ଆଜି ଯେତେ ଝିଅ ପଢୁଛନ୍ତି,
ସେତେବେଳେ ସେତେ ଝିଅ ପଢୁନଥିଲେ।
आजि जेते झिअ पढ़ुछन्ति,
सेतेबेळे सेते झिअ पढ़ुनथिले।

आज जितनी लड़कियाँ पढ़ रही हैं,
तब उतनी लड़कियाँ नहीं पढ़ती थीं।

6. ମୁଁ ଯେପର୍ଯ୍ୟନ୍ତ ନକହିଛି, ସେପର୍ଯ୍ୟନ୍ତ ତୁମେ
ତାଙ୍କ ବିଷୟରେ କିଛି ପଚାରିବ ନାହିଁ।
मुँ जेपर्ज्यन्त नकहिछि, सेपर्ज्यन्त तुमे
तांक बिषयरे किछि पचारिब नाहिं।

जब तक मैं नहीं बोलूगां तब तक उसके
बारे में तुम कुछ नहीं पूछेगी।

2) 1. ଆପଣ କହିଲେ ପରା ପଚାଶ ଟଙ୍କାରେ
ଆପଣ ଚାକିରୀ କରିଥିଲେ।
आपण कहिले परा पचाश टंकारे
आपण चाकिरी करिथिले।

आपने कहा कि पचास रूपए में आप
ने नौकरी शुरु की थी।

2. ଆପଣ କହିଲ କି ପଚାଶ ଟଙ୍କାରେ
ଆପଣ ଚାକିରୀ କରିଥିଲେ।
आपण कहिले कि पचाश टंकारे
आपण चाकिरी करिथिले।

आपने कहा कि पचास रूपए मैं
आपने नौकरी शुरु की थी।

उपर्युक्त वाक्यों के रेखांकित शब्दयुग्म हिंदी के 'जब-तब', 'जबतक-तबतक', 'जहाँ-वहाँ', 'जितनी-उतनी', जो-वे के समान हैं। ये सहसंबंध सूचक शव्द हैं। उपर्युक्त वाक्यों में इन शव्द युग्मों से दो दो वाक्यों का संयोजन किया गया है। ये सहसंबंध सूचक शब्दयुग्म क्रिया होने/ करने का समय, जगह, परिमाण आदि का बोध कराते हैं।

ऊपर (2) के इन वाक्यों के रेखांकित शब्द 'ପରା' (परा) तथा 'କି' (कि) अव्यय का प्रयोग हिंदी के 'कि' के समान हैं। इन अव्ययों का प्रकार्य, हिंदी की तरह किसी का कथन, सोच, भावना,

**अनुभव, राय आदि, उद्धृत करना है। ऐसे वाक्यों में वक्ता का उल्लेख इस के पहले/बाद में हो सकता है।**

(3) 1. ସମ୍ଭବ ହେଲେ ମୁଁ ପରୀକ୍ଷା ପରେ ଯିବି ଓ ତାକୁ ସାଙ୍ଗରେ ଘେନି ଆସିବି। — **अगर संभव होगा तो मैं परीक्षा के बाद जाऊँगी और उसे साथ ले आऊँगी।**

**सम्भब हेले मुँ परीक्षा परे जिबि <u>ओ</u> ताकु सांगरे घेनि आसिबि।**

**ऊपर के वाक्य में रेखांकित शब्द संयोजक 'ଓ' (ओ) के प्रयोग से दोनों वाक्यों को जोड़ कर एक संयुक्त वाक्य बनाया गया है। 'ଓ' (ओ), 'ତଥା' (तथा) के स्थान पर 'କି' (कि) भी संयोजक रूप में प्रयोग कर सकते हैं।**

2. ଆଜି ସେହି କର୍ତ୍ତବ୍ୟବୋଧ ନାହିଁ, କିମ୍ବା କର୍ତ୍ତବ୍ୟବୋଧ ସତ୍ତ୍ୱେ ଶିକ୍ଷାଦାନର ପରିବେଶ ନାହିଁ। — **आज वह कर्त्तब्य बोध नहीं या कर्त्तव्यवोध होते हुए भी शिक्षादान करने का वातावरण नहीं।**

**आजि सेहि कर्त्तब्यबोध नाहीं, किम्बा कर्त्तब्यबोध सत्त्वे शिक्षादानर परिबेश नाहिं।**

**ऊपर के वाक्य में 'କିମ୍ବା' (किंबा) शब्द वियोजक अव्यय शब्द है जो हिंदी के 'या' के समान है। 'କିମ୍ବା', (किंबा) के स्थान पर 'ଅଥବା' (अथबा), 'ନଚେତ୍' (नचेत) आदि शब्दों का प्रयोग भी कर सकते हैं। ऐसे प्रयोग एक संयुक्त वाक्य में दो विकल्पों को दिखाते हैं।**

# ପାଠ 21
# पाठ

## ଏକ ସାକ୍ଷାତକାର
## एक साक्षातकार

## साक्षात्कार

ପ୍ରଦୋଷ : ଆମକୁ ଏଠି ବସେଇ ଦେଇ ମନ୍ତ୍ରୀଙ୍କ ପି.ଏ. କୁଆଡ଼େ ଗଲେ ? ମନ୍ତ୍ରୀ ମହାଶୟ କେତେବେଳେ ଆସିବେ କେଜାଣି ?

प्रदोष : हमको यहाँ बिठा कर मंत्री जी के पी.ए. कहाँ गए? मंत्रीजी कब आएँगे, कौन जाने ?

ପ୍ରଭାତ : ଆରେ ଏଇ ତ ଆସି ଗଲେଣି ।

प्रभात : अरे वे तो आ गए।

ପ୍ରଭାତ ଓ ପ୍ରଦୋଷ : ନମସ୍କାର ଆଜ୍ଞା ।

प्रभात और प्रदोष : नमस्कार जी।

ସଂସ୍କୃତି ମନ୍ତ୍ରୀ : ନମସ୍କାର ବସନ୍ତୁ ।

संस्कृति मंत्री : नमस्कार ! बैठिए।

ପ୍ରଦୋଷ : ମୁଁ ପ୍ରଦୋଷ ଦାସ । ଜଟଣୀ କଳାକେନ୍ଦ୍ରର ସେକ୍ରେଟାରୀ, ଆଉ ଇଏ ମୋର ସହକାରୀ ପ୍ରଭାତ ପଟ୍ଟନାୟକ ।

प्रदोष : मैं प्रदोष दास। जटणी कला केंद्र का सेक्रेट्री और ये मेरे सहयोगी प्रभात पटनायक हैं।

ସଂସ୍କୃତି ମନ୍ତ୍ରୀ : ଆପଣମାନଙ୍କର ଆସିବାର କାରଣ ଦୟାକରି ଜଣାଇବେ କି ?

संस्कृति मंत्री : क्या आप कृपया अपने आने का कारण बताएँगे?

ପ୍ରଦୋଷ : ଆଜ୍ଞା, ଜଟଣୀରେ ଗୋଟିଏ ଷ୍ଟାଡ଼ିଅମ୍

प्रदोष : जी ! जटणी में सरकार की तरफ से एक स्टेड़ियम बनवाना हमारा उद्देश्य है।

| | | | |
|---|---|---|---|
| | ସରକାରଙ୍କ ଦ୍ୱାରା କରାଇବା ଆମର ଉଦ୍ଦେଶ୍ୟ । | | |
| ପ୍ରଭାତ | : ଆମ କଳାକେନ୍ଦ୍ରରେ ଜଣେ ଗୁରୁ ଓଡ଼ିଶୀ ଗୀତ ଶିଖାନ୍ତି । ଛଉ ନୃତ୍ୟ, ପାଇକ ନୃତ୍ୟ ଓ ଓଡ଼ିଶୀ ନୃତ୍ୟ ଶିଖାଇବାକୁ ଭୁବନେଶ୍ୱରରୁ ଅଭିଜ୍ଞ ଶିକ୍ଷକମାନଙ୍କୁ ଡକେଇଥାଉ । | प्रभात | : हमारे कला केंद्र में एक गुरु ओड़िशी संगीत सिखाते हैं। 'छउ -नृत्य', 'पाइक नृत्य' और 'ओड़िशी नृत्य' सिखाने के लिए भुवनेश्वर से अनुभवी शिक्षकों को हम बुलाकर लाते हैं। |
| ପ୍ରଦୋଷ | : ଆମ କେନ୍ଦ୍ର ପ୍ରତିବର୍ଷ କେବଳ ଅନେକ ସାଂସ୍କୃତିକ ଉତ୍ସବର ଆୟୋଜନ କରେନାହିଁ । ଓଡ଼ିଶାର ବିଭିନ୍ନ କଳାକେନ୍ଦ୍ର ମାଧ୍ୟମରେ ଏହି ଉତ୍ସବକୁ ଆୟୋଜନ କରାଇଥାଏ । ଦିଲ୍ଲୀରେ ହେଉଥିବା ଭାରତ ଉତ୍ସବ ପାଇଁ ଆମେ କଳାକେନ୍ଦ୍ର ଦ୍ୱାରା ଓଡ଼ିଶୀ ନାଚ ଦଳ, ଯାତ୍ରାଦଳ, ଛଉନାଚ ଦଳ ପ୍ରଭୃତି ପଠାଇଥାଉ । | प्रदोष | : हमारा केंद्र हर साल सिर्फ अनेक सांस्कृतिक उत्सवों का आयोजन नहीं करता है। ओड़िशा के विभिन्न, कला केंद्रों के माध्यम से ऐसी उत्सवों का आयोजन कराता भी है। दिल्ली में होनेवाले भारतोत्सव के लिए कला केंद्र द्वारा हम 'ओड़िशी नृत्य दल', 'यात्रा दल', 'छउ नृत्य दल' आदि भिजवाते हैं। |
| ସଂସ୍କୃତି ମନ୍ତ୍ରୀ | : ଗତ ବର୍ଷ ଯେତେବେଳେ କେନ୍ଦ୍ର ସରକାର ଦିଲ୍ଲୀରେ ଭାରତ ଉତ୍ସବର ଆୟୋଜନ କରାଇଥିଲେ | संस्कृति मंत्री | : पिछले वर्ष जब केंद्र सरकार ने दिल्ली में भारतोत्सव का आयोजन करवाया था तब मैं ने भी उस में हमारे ओड़िशा दल के साथ भाग लिया था। ओड़िशा के 'छउ नृत्य' और 'ओड़िशी नृत्य' के शिल्पियों ने हमारी ख्याति बढ़ाई थी। |

ସେତେବେଳେ ମୁଁ ମଧ୍ୟ ସେଥିରେ ଆମର ଓଡ଼ିଶାଦଳ ସହିତ ଭାଗ ନେଇଥିଲି । ଓଡ଼ିଶାର ଛଉନୃତ୍ୟ ଓ ଓଡ଼ିଶୀ ନୃତ୍ୟ ଶିଳ୍ପୀମାନେ ଆମର ସୁନାମ ବଢ଼ାଇ ଦେଇଥିଲେ ।

ପ୍ରଦୋଷ : ଆଜ୍ଞା, ଆପଣଙ୍କର ମନେଥିବ, ନବେ ମସିହାରେ 'ଜଟଣୀ କଳା କେନ୍ଦ୍ର'ର ଦଶାବତାର ନୃତ୍ୟ ନାଟିକା ସାରା ଋଷିଆରେ ଚହଳ ପକାଇ ଦେଇଥିଲା ।

ସଂସ୍କୃତି ମନ୍ତ୍ରୀ : ହଁ, ମୋର ମନେ ଅଛି । ଓଡ଼ିଶାର କୃତି କଳାକାର ମାନଙ୍କୁ ସ୍ୱାଗତ ଜଣାଇବା ପାଇଁ ମୁଁ ମଧ୍ୟ ଉଡ଼ା-ଜାହାଜ ପଡ଼ିଆକୁ ଯାଇଥିଲି ।

ପ୍ରଭାତ : ଏସବୁ ଛଡ଼ା ଆମେ ଆମର କେନ୍ଦ୍ର ଦ୍ୱାରା ଋଷିଆରୁ 'ବ୍ୟାଲେ ନୃତ୍ୟଦଳ' ଡକେଇ ଆଣିଥିଲୁ । ସେଥର ଆଜ୍ଞା, ଆମକୁ ବହୁତ ହଇରାଣ ହେବାକୁ ପଡ଼ିଲା ।

**प्रदोष : जी, आपको याद होगा, उन्नीस सौ नब्बे ईसवी में 'जटणी कला केंद्र' की 'दशावतार' नृत्य नाटिका ने सारे रूस में धूम मचा दी थी।**

**संस्कृति मंत्री : हाँ, मुझे याद है। ओड़िशा के कृति कलाकारों का स्वागत करवाने के लिए मैं भी हवाई-अड्डे गया था।**

**प्रभात : इस के अतिरिक्त हमने एक बार अपने केंद्र द्वारा रूस से 'बेले नृत्य-दल' बुलवाया था। जी, तब हमें बहुत परेशान होना पड़ा था।**

**संस्कृति मंत्री : क्यों, क्या असुविधा हुई?**

**प्रदोष : उस छोटे से मंच पर उन लोगों ने अपने नर्तकों से नहीं नचवाया। इसलिए हमको उस दिन प्रोग्राम की अवधि कम करनी पड़ी।**

ସଂସ୍କୃତି ମନ୍ତ୍ରୀ: କାହିଁକି, କ'ଣ ଅସୁବିଧା ହେଲା ?

ପ୍ରଦୋଷ : ସେହି ଛୋଟ ସଭାମଞ୍ଚ ଉପରେ ସେମାନେ ନିଜର ନୃତ୍ୟଶିଳ୍ପୀ ମାନଙ୍କୁ ନଚାଇଲେ ନାହିଁ । ଆମକୁ ସେଦିନ ସେଥିପାଇଁ ପ୍ରୋଗ୍ରାମ୍‌ର ସମୟ୍ କମେଇବାକୁ ପଡ଼ିଲା ।

ସଂସ୍କୃତି ମନ୍ତ୍ରୀ: ଇଏତ ଖୁବ୍ ଦୁଃଖର ବିଷୟ୍ ।

ପ୍ରଭାତ : ସେଥିପାଇଁ ଆଜ୍ଞା, ଆମେ ଆପଣଙ୍କୁ ଗୋଟିଏ ପ୍ରସ୍ତାବ ଦେବା ପାଇଁ ଆସିଚୁ ।

ସଂସ୍କୃତି ମନ୍ତ୍ରୀ: କୁହନ୍ତୁ ।

ପ୍ରଦୋଷ : ସରକାରଙ୍କ ତରଫରୁ ଗୋଟିଏ ଷ୍ଟାଡ଼ିୟମ୍ କରେଇବା ପାଇଁ ଯଦି ଆପଣ ଅର୍ଥ ମନ୍ତ୍ରୀଙ୍କ ଦ୍ୱାରା ସାହାଯ୍ୟ କରେଇ ପାରନ୍ତେ ତେବେ ଆମେ ବହୁତ ଉପକୃତ ହେବୁ ।

ସଂସ୍କୃତି ମନ୍ତ୍ରୀ: ଆପଣମାନେ ନିଶ୍ଚିନ୍ତ ରହନ୍ତୁ । ମୁଁ ଏ ସମସ୍ତ ବିଷୟ୍ ମନ୍ତ୍ରୀ ମଣ୍ଡଳର ସଭାଦ୍ୱାରା ଉପସ୍ଥାପନ କରିବି ଓ ସରକାରଙ୍କ

**संस्कृति मंत्री : यह तो बड़े दुःख की बात है।**

**प्रभात : जी, इसीलिए हम आपको एक प्रस्ताव देने आए हैं।**

**संस्कृति मंत्री : कहिए।**

**प्रदोष : सरकार की तरफ से एक स्टेड़ियम बनवाने के लिए यदि अर्थमंत्री के द्वारा आप मदद कर सके तो हम बहुत उपकृत होंगे।**

**संस्कृति मंत्री : आप लोग निश्चिंत रहिए। मैं ये सब विषय मंत्रि-मंडल की सभा में उपस्थित करूँगा और सरकार के द्वारा उपयुक्त व्यवस्था कराऊँगा।**

**प्रदोष और प्रभात : बहुत धन्यवाद, जी नमस्कार।**

ଦ୍ୱାରା ଉପଯୁକ୍ତ
ପ୍ରତିବିଧାନ କରାଇବି ।

ପ୍ରଦୋଷ ଓ ପ୍ରଭାତ : ବହୁତ
ଧନ୍ୟବାଦ ।
ଆଜ୍ଞା ନମସ୍କାର ।

## शब्दार्थ

| **ओड़िआ शब्द** | **हिंदी अर्थ** |
|---|---|
| ମହାଶୟ | **महाशय** |
| ସହକାରୀ | **सहयोगी, साथी** |
| ଦୟାକରି | **दयापूर्वक, कृपया** |
| ଉଦ୍ଦେଶ୍ୟ | **उद्येश्य** |
| ଅଭିଜ୍ଞ | **अभिज्ञ, अनुभवी** |
| ସାଂସ୍କୃତିକ | **साँस्कृतिक** |
| ଉତ୍ସବ | **उत्सव** |
| କେନ୍ଦ୍ର ସରକାର | **केंद्र सरकार** |
| ସୁନାମ | **नाम (ख्याति)** |
| ନୃତ୍ୟ ନାଟିକା | **नृत्य नाटिका** |
| ଉଡ଼ାଜାହାଜ ପଡ଼ିଆ | **हवाई-अड्डा** |
| ଡକେଇଥିଲୁ | **बुलाया था** |
| ହଇରାଣ | **परेशानी** |
| ଅସୁବିଧା | **असुविधा** |
| ସଭାମଞ୍ଚ | **मंच** |
| ସମୟ | **समय, अवधि** |
| କମେଇବା | **कम करना** |

| | |
|---|---|
| କରେଇବା | **बनवाना** |
| ନିଶ୍ଚିନ୍ତ | **निश्चिंत** |

ଅଭ୍ୟାସ

**अभ्यास**

**I.** ନିମ୍ନରେ ଦିଆଯାଇଥିବା ବାକ୍ୟ ଗୁଡ଼ିକୁ ଅଭ୍ୟାସ କରନ୍ତୁ ।
**(नीचे दिए गए वाक्य दोहराइए ।)**

1. ଆମକୁ ଏଠି ବସେଇ ଦେଇ ମନ୍ତ୍ରୀଙ୍କ ପି.ଏ. କୁଆଡ଼େ ଗଲେ ?
2. ଗୋଟିଏ ଷ୍ଟାଡ଼ିୟମ୍ ସରକାରଙ୍କ ଦ୍ୱାରା କରେଇବା ଆମର ଉଦ୍ଦେଶ୍ୟ ।
3. ଆମ କଳାକେନ୍ଦ୍ରରେ ଜଣେ ନୃତ୍ୟଗୁରୁ ଓଡ଼ିଶୀ ନୃତ୍ୟ ଶିଖାନ୍ତି ।
4. ଆମ କେନ୍ଦ୍ର ପ୍ରତିବର୍ଷ ଅନେକ ସାଂସ୍କୃତିକ ଉତ୍ସବର ଆୟୋଜନ କରେଇଥାଏ ।
5. ଆମେ 'ଓଡ଼ିଶୀ ନାଚ', 'ଯାତ୍ରାଦଳ', 'ଛଉନାଚ ଦଳ' ପ୍ରଭୃତି ପଠେଇ ଥାଉ ।
6. ଓଡ଼ିଶାର ଛଉନୃତ୍ୟ ଓ ଓଡ଼ିଶୀ ନୃତ୍ୟଶିଳ୍ପୀମାନେ ଆମର ସୁନାମ ବଢ଼େଇ ଦେଇଥିଲେ ।
7. କଳାକେନ୍ଦ୍ରର ଦଶାବତାର ନୃତ୍ୟନାଟିକା ସାରା ଋଷିଆରେ ଚହଳ ପକେଇ ଦେଇଥିଲା ।
8. ଓଡ଼ିଶାର କୃତୀ କଳାକାରମାନଙ୍କୁ ସ୍ୱାଗତ ଜଣେଇବା ପାଇଁ ମୁଁ ଉଡ଼ାଜାହାଜ ପଡ଼ିଆକୁ ଯାଇଥିଲି ।
9. ସେମାନେ ନୃତ୍ୟଶିଳ୍ପୀମାନଙ୍କୁ ନଚାଇଲେ ନାହିଁ ।
10. ନୃତ୍ୟ ଉତ୍ସବର ସମୟ କମେଇବାକୁ ପଡ଼ିଲା ।
11. ସରକାରଙ୍କ ଦ୍ୱାରା ଉପଯୁକ୍ତ ପ୍ରତିବିଧାନ କରାଇବି ।
12. ମୁଖ୍ୟମନ୍ତ୍ରୀଙ୍କ କର କମଳଦ୍ୱାରା କଳାଭବନର ଉଦ୍‌ଘାଟନ କରେଇବା ଆମ କଳାସମିତିର ଆଭିମୁଖ୍ୟ ।
13. ନିଜର ପିଲାମାନଙ୍କୁ ଡାକ୍ତରୀ ପଢ଼େଇବା କିଛି ମାଆବାପାଙ୍କର ଅଭିଳାଷ ଅଛି ।
14. ନିର୍ଦ୍ଦେଶକ କହିଲେ କି, ଏ ବର୍ଷ ସବୁ ଖାଲି ପଦଗୁଡ଼ିକୁ ଭର୍ତ୍ତି କରାଇବା ମୋର ଉଦ୍ଦେଶ୍ୟ ।
15. ଆମେ ଆପଣଙ୍କୁ ଗୋଟିଏ ପ୍ରସ୍ତାବ ଦେବାପାଇଁ ଆସିଛୁ ।

**II.** ରେଖାଙ୍କିତ ଶବ୍ଦ ସ୍ଥାନରେ ଦିଆ ଯାଇଥିବା ଶବ୍ଦ ପ୍ରୟୋଗ କରି ନୂଆ ବାକ୍ୟ ଗଠନ କରନ୍ତୁ ।
**(वाक्यो में रेखांकित शब्दों के स्थान पर दिए गए शब्दों का प्रयोग कर नये वाक्य बनाइए ।)**

1) ଆମକୁ ଏଠି ବସେଇଦେଇ ମନ୍ତ୍ରୀଙ୍କ ପି.ଏ. କୁଆଡ଼େ ଗଲେ ?

ସେମାନଙ୍କୁ

ତାଙ୍କୁ

ପିଲାମାନଙ୍କୁ

ଲୋକମାନଙ୍କୁ

ତୁମମାନଙ୍କୁ

2) ଆମକୁ ବସେଇଦେଇ କୁଆଡ଼େ ଗଲେ ?

ପଠେଇଦେଇ

ରଖେଇଦେଇ

ଠିଆ କରେଇଦେଇ

ଡକେଇଦେଇ

ଦେଖେଇ ଦେଇ

3) ଓଡ଼ିଶୀ ନୃତ୍ୟଦଳ ଦ୍ୱାରା ଆମମାନଙ୍କୁ ବିଦେଶ ପଠାଯାଉଅଛି ।

ଛଉନୃତ୍ୟ ଦଳ

ଯାତ୍ରା ଦଳ

ଅପେରା ଦଳ

ନାଟକ ଦଳ

ଭଜନ ଦଳ

4. ସରକାରଙ୍କ ଦ୍ୱାରା ଷ୍ଟାଡ଼ିୟମ୍ କରାଇବା ଆମର ଉଦ୍ଦେଶ୍ୟ ।

ଅଫିସର

ଇଂଜିନିୟର୍

କଣ୍ଟ୍ରାକ୍ଟର

ଶ୍ରମିକ

ମନ୍ତ୍ରୀ

5. ଆମେ ଋଷିଆରୁ 'ବ୍ୟାଲେ ନୃତ୍ୟଦଳ' ଡକାଇଥିଲୁ ।

| | |
|---|---|
| ତୁ | ଡକାଇଥିଲୁ |
| ତୁମେ | ଡକାଇଥିଲ |
| ସେମାନେ | ଡକାଇଥିଲେ |
| ସରକାର | ଡକାଇଥିଲେ |

ସେ ଡକାଇଥିଲେ

6. ସେମାନେ ନୃତ୍ୟଶିଳ୍ପୀ ମାନଙ୍କୁ ନଚାଇଲେ ନାହିଁ ।

ପିଲା ପଢ଼ାଇଲେ
ଯୁବକ ଡକାଇଲେ
ଗାୟକ ଶୁଣାଇଲେ
ସ୍ତ୍ରୀ ପଠାଇଲେ
ଝିଅ ନଚାଇଲେ

7. ମୁଁ ସରକାରଙ୍କ ଦ୍ୱାରା ଉପଯୁକ୍ତ ପ୍ରତିବିଧାନ କରାଇବି ।

ତୁମେ ବ୍ୟବସ୍ଥା କରାଇବ
ସେମାନେ ସୁବିଧା କରାଇବେ
ସେ ନିୟମ କରାଇବେ
ଆପଣମାନେ କାର୍ଯ୍ୟ କରାଇବେ
ଲୋକମାନେ କାର୍ଯ୍ୟକ୍ରମ କରାଇବେ

**III.** ଉଦାହରଣ ଅନୁଯାୟୀ ନିମ୍ନରେ ଦିଆଯାଇଥିବା ବନ୍ଧନୀ ମଧ୍ୟରୁ ଶବ୍ଦଗୁଡ଼ିକୁ ଉପଯୁକ୍ତ ରୂପେ ପ୍ରୟୋଗ କରି ବାକ୍ୟ ବିସ୍ତାର କରନ୍ତୁ ।
**(उदाहरण के अनुसार कोष्ठक में दिए गए शब्दों के उपयुक्त रूपों का प्रयोग कर वाक्यों का विस्तार कीजिए।)**

ଉଦାହରଣ :- ଆମେ ଷ୍ଟାଡ଼ିୟମ୍ ତିଆରି କରିବୁ । (ସରକାର)
ଆମେ ସରକାରଙ୍କ ଦ୍ୱାରା ଷ୍ଟାଡ଼ିୟମ୍ ତିଆରି କରାଇବୁ ।

1. ପିଲାମାନେ ଗୀତ ଶିଖୁଛନ୍ତି । (ଶିକ୍ଷକ)
2. ମା' ରୋଷେଇ କରୁଛନ୍ତି । (ଅପା)
3. ଇଂଜିନିୟରମାନେ ବନ୍ଧ ତିଆରି କଲେ । (ମଜୁରିଆ)
4. ଶିକ୍ଷକ ଗୀତ ଶୁଣାଉଛନ୍ତି । (ପିଲାମାନେ)
5. ଡାକ୍ତର ରୋଗୀକୁ ସେବା କରାଇଲେ । (ନର୍ସ)
6. ଗୁରୁମା ପାଠ ପଢ଼ାଇଲେ । (ଛାତ୍ରମାନଙ୍କୁ)
7. ବିଚାରପତି ମକଦ୍ଦମା ବିଚାର କରାଇଲେ । (ଓକିଲ)

8. ଆମ କେନ୍ଦ୍ର ପ୍ରତିବର୍ଷ ଅନେକ ସାଂସ୍କୃତିକ ଉତ୍ସବର ଆୟୋଜନ କରେ । (କଳାକେନ୍ଦ୍ର)
9. ଆପଣ ଷ୍ଟାଡ଼ିୟମ୍ ପାଇଁ ସାହାଯ୍ୟ କରିବେ । (ଅର୍ଥମନ୍ତ୍ରୀ)
10. ଝିଅ ନାଚ ଶିଖୁଛି । (ଶିକ୍ଷକ)

**IV.** ଉଦାହରଣ ଅନୁଯାୟୀ ବାକ୍ୟ ଗୁଡ଼ିକ ପରିବର୍ତ୍ତନ କରନ୍ତୁ ।
**(उदाहरण के अनुसार वाक्यों का परिवर्त्तन कीजिए)**

ଉଦାହରଣ :- ରାମବାବୁ ମିସ୍ତ୍ରୀଙ୍କ ଦ୍ୱାରା ସାଇକେଲ୍ ଠିକ୍ କରାଇଲେ ।
ମିସ୍ତ୍ରୀ ସାଇକେଲ୍ ଠିକ୍ କଲା ।

1. ମା' ଚାକରାଣୀ ଦ୍ୱାରା ବାସନ ସଫା କରାଇଲେ ।
2. ଶିକ୍ଷକମାନେ ପିଲାମାନଙ୍କ ଦ୍ୱାରା ଗୀତ ବୋଲାଇଲେ ।
3. ମଧୁ ଦୋକାନୀ ଦ୍ୱାରା ରେଡ଼ିଓ ମରାମତି କରାଇଲା ।
4. ତୁ ବାପାଙ୍କ ଦ୍ୱାରା ବଜାରରୁ ବହି ଅଣାଇଲୁ ।
5. ତୁମେ ସରକାରଙ୍କ ଦ୍ୱାରା ସ୍କୁଲ ଘର ତିଆରି କରାଇଲ ।

**V.** 'କ' ସ୍ତମ୍ଭରେ ଦିଆଯାଇଥିବା କ୍ରିୟାର ପ୍ରେରଣାର୍ଥକ ରୂପ 'ଖ' ସ୍ତମ୍ଭରୁ ବାଛନ୍ତୁ ।
**('क' स्तम्भ में दिए गए क्रियाओं के प्रेरणार्थक रूप 'ख' स्तंभ से मिलाइए)**

| 'କ' | 'ଖ' |
|---|---|
| କରିବା | ଦେଖେଇବା |
| ଜଗିବା | ଜଣେଇବା |
| ଜାଣିବା | ଜଗେଇବା |
| ଦେଖିବା | କରେଇବା |
| ଖାଇବା | ଶୁଆଇବା |
| ଶୋଇବା | ଖୁଆଇବା |

**VI.** ବନ୍ଧନୀ ମଧ୍ୟରୁ ଦୁଇ ଦୁଇଟା ଉପଯୁକ୍ତ ଶବ୍ଦ ବାଛି ବାକ୍ୟ ପୂରଣ କରନ୍ତୁ ।
**(कोष्ठक में दो दो उपयुक्त शब्द चुनकर वाक्य पूरे कीजिए।)**

1. ଆପଣଙ୍କୁ ______ ପାଇଁ ଆମେ ପ୍ରସ୍ତାବ _____ । (ଜଣେଇବା, ଦେଲୁ, ଜାଣିବା)

2. ବାପା ଘର ______ ପାଇଁ ମିସ୍ତ୍ରୀଙ୍କୁ ______ । (ଡକେଇଲେ, କରେଇବା, କରିବା)

3. ସେମାନେ ପିଲାମାନଙ୍କୁ ______ ଆଣି ନାଚ ______ । (କରେଇଲେ, ଡକେଇ, କଲେ)

4. ଗୁରୁଜୀ ଛାତ୍ରମାନଙ୍କୁ _____ ପାଇଁ ଘର ଆଡ଼କୁ _____ । (ପଢ଼ିବା, ପଢ଼େଇବା, ନେଲେ)

5. ମନ୍ତ୍ରୀ ଆମକୁ _____ ଦେଇ କୁଆଡ଼େ ______ । (ଗଲେ, ଗଲା, ବସେଇ)

**VII.** ଉଦାହରଣ ଅନୁଯାୟୀ ବନ୍ଧନୀ ମଧ୍ୟରେ ଦିଆଯାଇଥିବା ଶବ୍ଦ ଗୁଡ଼ିକୁ ପ୍ରୟୋଗ କରି ବାକ୍ୟ ଗଠନ କରନ୍ତୁ ।

**(उदाहरण के अनुसार कोष्ठक में दिए गए शब्दों का प्रयोग कर वाक्यों का विस्तार कीजिए ।)**

ଉଦାହରଣ :- ପିଲାଟି ଶୋଇଲା ।
(ମା', ଚାକର)
ମା' ଚାକର ଦ୍ୱାରା ପିଲାଟିକୁ ଶୁଆଇଲେ ।

1. ପିଲାମାନେ ନାଚ ଶିଖିଲେ ।
(ବାପା, ଗୁରୁ)

2. ନାଚଦଳ ଋଷିଆରେ ନାଚିଲେ ।
(ସରକାର, କଳାକେନ୍ଦ୍ର)

3. ଷ୍ଟାଡ଼ିୟମ୍ ନିର୍ମାଣ ହେଲା ।
(ମନ୍ତ୍ରୀ, ଇଞ୍ଜିନିୟର)

4. ପିଲାଟି ଚିତ୍ର ଆଙ୍କିଲା ।
(ସାର, ରମେଶ)

5. ଘର ତିଆରି କରାହେଲା ।
(ଆମେ, ଇଂଜିନିୟର)

**VIII.** ବନ୍ଧନୀ ମଧ୍ୟରୁ ମୂଳ କ୍ରିୟାର ଉପଯୁକ୍ତ ପ୍ରେରଣାର୍ଥକ ରୂପ ବ୍ୟବହାର କରି ବାକ୍ୟ ଗଠନ କରନ୍ତୁ ।

**(कोष्ठक में दिए गए मूल क्रियाओं के उपयुक्त प्रेरणार्थक रूपों का प्रयोग कर वाक्य पूरे कीजिए ।)**

1. କେନ୍ଦ୍ର ସରକାର ଦିଲ୍ଲୀରେ ଭାରତ ଉତ୍ସବର ଆୟୋଜନ _____ । (କର୍)

2. ଆମ କେନ୍ଦ୍ର ଦ୍ୱାରା ଋଷିଆରୁ 'ବ୍ୟାଲେ ନୃତ୍ୟଦଳ' ______ । (ଡାକିବା)

3. ଆମେ କଳାକେନ୍ଦ୍ର ଦ୍ୱାରା ଓଡ଼ିଶୀ ନାଚ ______ । (ପଠ୍)

4. ସଭାମଂଚ ଉପରେ ସେମାନେ ନିଜର ନୃତ୍ୟଶିଳ୍ପୀ ମାନଙ୍କୁ _____ । (ନଚ୍)

5. ଓଡ଼ିଶୀ କଳାକେନ୍ଦ୍ରର ନୃତ୍ୟନାଟିକ ସାରା ରଷିଆରେ ଚହଳ _____ । (ପକାଇବା)

**IX.** ଉଦାହରଣ ଅନୁଯାୟୀ ନିମ୍ନରେ ଦିଆଯାଇଥିବା କ୍ରିୟାରୂପ ଗୁଡ଼ିକର ତାଲିକାରେ ଛାଡ଼ାଯାଇଥିବା କ୍ରିୟାରୂପ ଲେଖନ୍ତୁ ।
**(उदाहरण के अनुसार नीचे दिए गए क्रियारूपों की शृंखला से छोड़ेगए क्रियारूप लिखिए ।)**

ଉଦାହରଣ :- କରିବା
କରିବାର ଅଛି, କରୁଛି, କରେଇବାର ଅଛି

1. ଲେଖିବା
ଲେଖିବାର ଅଛି, ______, ଲେଖେଇବାର ଅଛି ।
2. ଶୁଣିବା
______, ଶୁଣୁଛି, _______ ।
3. ଦୌଡ଼ିବା
______, ______, ଦୌଡ଼େଇବାର ଅଛି ।
4. ପଢ଼ିବା
_______, ପଢୁଛି, ପଢ଼େଇବାର ଅଛି ।
5. ଚାଲିବା
ଚାଲିବାର ଅଛି, ______, ଚଲେଇବାର ଅଛି ।
6. ଗଣିବା
______, ଗଣୁଛି, ______ ।
7. ଖାଇବା
ଖାଇବାର ଅଛି, ______, ଖୁଆଇବାର ଅଛି ।

**X.** ଉଦାହରଣ ଅନୁଯାୟୀ ନିମ୍ନରେ ଦିଆଯାଇଥିବା ବାକ୍ୟକୁ ପରିବର୍ତ୍ତନ କରନ୍ତୁ ।
**(उदाहरण के अनुसार नीचे दिए गए वाक्यों का परिवर्तन कीजिए ।)**

ଉଦାହରଣ :- ସବିତା ନାଚ କରୁଛି ।
ସବିତା ଦ୍ୱାରା ନାଚ କରାଯାଉଛି ।

1. ବୁନୁ ଅଙ୍କ କଷୁଛି ।
2. ସେମାନେ ଚିତ୍ର ଆଙ୍କୁଛନ୍ତି ।
3. ଶିଶୁଟି ଦୁଧ ପିଉଛି ।

4. ନନ୍ଦିତା ନାଚ ଶିଖୁଛି ।
5. ତୁ ଫୁଲ ତୋଳୁଛୁ ।
6. କବିମାନେ କବିତା ଲେଖୁଛନ୍ତି ।

**XI.** ବନ୍ଧନୀ ମଧ୍ୟରୁ ଉପଯୁକ୍ତ ଶବ୍ଦ ବାଛି ବାକ୍ୟ ପୂରଣ କରନ୍ତୁ ।
**(कोष्ठक में से उपयुक्त शब्द चूनकर वाक्य पूरे कीजिए ।)**

1. ପିଲାଙ୍କ ଦ୍ୱାରା କ୍ରିକେଟ୍ ______ । (ଖେଳ, ଖେଳାଯିବ, ଖେଳିବେ)
2. ମୋ ଦ୍ୱାରା ଭାତ ରନ୍ଧା ______ । (ହେବ, ହୋଇବ, ହୋଇଯିବ)
3. ସେମାନଙ୍କ ଦ୍ୱାରା ବହି ______ । (ପଢ଼ିବେ, ପଢ଼, ପଢ଼ାହେବ )
4. ଛାତ୍ରମାନଙ୍କ ଦ୍ୱାରା ବକ୍ତୃତା _____। (ଦେବେ, ଦିଆହେବ, ଦେବ)
5. ସୀତା ଦ୍ୱାରା ଗୀତ _______। (ବୋଲିବ, ବୋଲିବେ, ବୋଲାହେବ)

ପଢ଼ନ୍ତୁ ଓ ବୁଝନ୍ତୁ

## ଦରଖାସ୍ତ

ପ୍ରାପ୍ତହେବେ -
ଶିକ୍ଷା ଓ ସଂସ୍କୃତି ବିଭାଗ ମନ୍ତ୍ରୀ,
ଓଡ଼ିଶା ସରକାରଙ୍କ ଶିକ୍ଷା ଓ ସଂସ୍କୃତି ମନ୍ତ୍ରଣାଳୟ
ସଚିବାଳୟ ମାର୍ଗ
ଭୁବନେଶ୍ୱର - ୧
ପତ୍ର ସଂଖ୍ୟା - ୧୨୫/୧୦ ତା
୨୬.୦୭.୨୦୦୫ ରିଖ

ବିଷୟ - ଷ୍ଟାଡ଼ିୟମ୍ ନିର୍ମାଣ ସକାଶେ ଆବେଦନ ।

ମାନନୀୟ ଓଡ଼ିଶାର ଶିକ୍ଷା ଓ ସଂସ୍କୃତି ବିଭାଗ ମନ୍ତ୍ରୀ, ଭୁବନେଶ୍ୱର

ମହୋଦୟ ........................................... ସମୀପେଷୁ

ମହାଶୟ,

ନିବେଦନର ଅଭିପ୍ରାୟ ଏହିକି ଯେ, ଆମେ ନିମ୍ନ ସ୍ୱାକ୍ଷରକାରୀଗଣ ଜଟଣୀ ଗ୍ରାମ କଳାକେନ୍ଦ୍ରର ସଂପାଦକ ଓ ସଭ୍ୟ ଅଟୁ। ଆମ ଗ୍ରାମଟି ଓଡ଼ିଶାର ଗୋଟିଏ ପ୍ରଧାନ ସାଂସ୍କୃତିକ କେନ୍ଦ୍ର ହେଲେ ମଧ୍ୟ ଏଠାରେ ଗୋଟିଏ ସ୍ଥାୟୀ ସଭାମଞ୍ଚ ନାହିଁ। ଏଠାରେ ଉଚ୍ଚମାନର ଆନ୍ତର୍ଜାତୀୟ ସାଂସ୍କୃତିକ ଉତ୍ସବମାନ ଅନୁଷ୍ଠିତ ହୋଇଥାଏ।

ଏଣୁ ଆମ୍ଭେମାନେ ଆପଣଙ୍କୁ ବିନୀତ ପ୍ରାର୍ଥନା କରୁକି, ଆପଣ ଦୟାକରି ଜଟଣୀରେ ଗୋଟିଏ ଷ୍ଟାଡ଼ିୟମ୍ ନିର୍ମାଣ କରାଇଲେ ଆମ୍ଭେମାନେ ଆପଣଙ୍କ ନିକଟରେ ଚିରକୃତଜ୍ଞ ରହିବୁ।

। ଇତି।

ଆପଣଙ୍କର ବିଶ୍ୱସ୍ତ

ଶ୍ରୀ ନବକିଶୋର ଦାସ

(ସଂପାଦକ ଜଟଣୀ କଳାକେନ୍ଦ୍ର,ଜଟଣୀ)

ଶ୍ରୀ ସରୋଜ ପଟନାୟକ (ସଭ୍ୟ)

ଶ୍ରୀ ଦେବଦତ୍ତ ମହାନ୍ତି (ସଭ୍ୟ)

ଶ୍ରୀ ସାଗର ଦାସ (ସଭ୍ୟ)

ତା ୨୬. ୭. ୨୦୦୫

ସ୍ଥାନ- ଜଟଣୀ

## पढ़िए और समझिए

### ଦେଶର ପ୍ରଗତି

ଆଜିକାଲି ଲୋକମାନେ କାମ କରିବା ଅପେକ୍ଷା ଅନ୍ୟମାନଙ୍କ ଦ୍ୱାରା କାମ କରେଇବାକୁ ଭଲ ପାଆନ୍ତି। କର୍ମ ମୁଖର ଜୀବନ ପ୍ରଗତିର ସୂଚକ। ଦେଶର ପ୍ରତ୍ୟେକ ଲୋକଙ୍କୁ ଶିକ୍ଷିତ କରେଇବା ଆମର ପ୍ରଧାନ କର୍ତ୍ତବ୍ୟ। ଛାତ୍ରମାନଙ୍କୁ ପାଠ ପଢ଼େଇବା ସଙ୍ଗେ ସଙ୍ଗେ ନୃତ୍ୟ, ସଂଗୀତ ଓ ଚିତ୍ରକଳା ଇତ୍ୟାଦି ଶିଖେଇବା ଉଚିତ୍। ସରକାର ଗାୟକ, ଗାୟିକା, ନର୍ତ୍ତକ, ନର୍ତ୍ତକୀ ପ୍ରଭୃତି ଶିଳ୍ପୀମାନଙ୍କୁ ଉତ୍ସାହିତ କରିବା ପାଇଁ ସେମାନଙ୍କୁ ବାହାରକୁ ପଠାଉଛନ୍ତି। ଉପଯୁକ୍ତ ଶିକ୍ଷକମାନଙ୍କ ଦ୍ୱାରା କଳାକାରମାନଙ୍କୁ ପ୍ରତିଷ୍ଠିତ କରାଉଛନ୍ତି। ନୂଆ ନୂଆ ପଦ୍ଧତିର ପରୀକ୍ଷା କରେଇ କଳାରେ ନୂତନତା ଅଣାଇବା ପାଇଁ ଚେଷ୍ଟା କରୁଛନ୍ତି। ବିଭିନ୍ନ ସାଂସ୍କୃତିକ ଅନୁଷ୍ଠାନମାନେ ଦେଶ ବିଦେଶରେ ଆମ ଦେଶର କଳା ଓ ସଂସ୍କୃତିକୁ ପ୍ରଚାର କରେଇ ଆମର ସୁନାମ ବଢ଼ଉଛନ୍ତି। ଜନ ସମାଜ ସଚେତନ ହେବା ଉଚିତ୍। କାରଣ ସେମାନଙ୍କର ପ୍ରଗତି ହିଁ ଦେଶର ପ୍ରଗତି।

### शब्दार्थ

| ओड़िआ शब्द | हिंदि अर्थ |
|---|---|
| ମନ୍ତ୍ରଣାଳୟ୍ | मंत्रालय |
| ସଚିବାଳୟ୍ | सचिवालय |
| ମାର୍ଗ | मार्ग, रास्ता |
| ସକାଶେ | केलिए |
| ଆବେଦନ | आवेदन, दरखास्त |
| ସଂସ୍କୃତି | संस्कृति |
| ମହାଶୟ୍ | महाशय |
| ସଭାମଞ୍ଚ | सभामंच, स्टेज् |
| ପ୍ରଗତି | प्रगति |
| ଉତ୍ସାହିତ କରିବା | प्रोत्साहन करना |
| ସୁନାମ | ख्याति, सुनाम |
| ସଚେତନ | सचेतन, सावधान |
| ଜନସମାଜ | जनसमाज,जनसमुदाय |

## अभ्यास
## ଅଭ୍ୟାସ

**I.** ଅନୁଚ୍ଛେଦର ଆଧାର ଉପରେ ନିମ୍ନରେ ଦିଆଯାଇଥିବା ପ୍ରଶ୍ନର ଉତ୍ତର ଦିଅନ୍ତୁ।
**(अनुच्छेद के आधार पर नीचे दिए गए प्रश्नों के उत्तर दीजिए।)**

1. ଆଜିକାଲି ଲୋକମାନେ କ'ଣ କରିବାକୁ ଭଲ ପାଆନ୍ତି ?
2. ଛାତ୍ରମାନଙ୍କୁ ପାଠ ପଢ଼ାଇବା ସଙ୍ଗେ ସଙ୍ଗେ କ'ଣ ସବୁ ଶିଖେଇବା ଉଚିତ୍ ?
3. ସରକାର ଶିଳ୍ପୀମାନଙ୍କୁ ଉତ୍ସାହିତ କରିବା ପାଇଁ କ'ଣ କରୁଛନ୍ତି ?
4. କଳାକାରମାନଙ୍କୁ କାହାଦ୍ୱାରା ପ୍ରଶିକ୍ଷଣ କରାଉଛନ୍ତି ?
5. ବିଭିନ୍ନ ସାଂସ୍କୃତିକ ଅନୁଷ୍ଠାନମାନେ ଆମ ଦେଶର କିପରି ସମ୍ମାନ ବଢ଼ାଉଛନ୍ତି ?

**II.** ପ୍ରତ୍ୟେକ ଶବ୍ଦ ଗୁଡିକୁ ଠିକ୍ କ୍ରମରେ ସଜାଇ ବାକ୍ୟ ଗଠନ କରନ୍ତୁ।
**(प्रत्येक शब्द समुह में दिए गए शब्दों को सहि क्रम में रखकर वाक्य बनाइए।)**

1. କରେଇବାକୁ, ଅନ୍ୟମାନଙ୍କ ଦ୍ୱାରା, କାମ କରିବା ଅପେକ୍ଷା, ଭଲପାଆନ୍ତି, ଆଜିକାଲି, ଲୋକମାନେ
2. ସେମାନଙ୍କୁ, ସରକାର, ଗାୟକ, ଗାୟିକା, ଶିଳ୍ପୀମାନଙ୍କୁ, ବାହାରକୁ ପଠାଉଛନ୍ତି, ଉତ୍ସାହିତ କରିବା ପାଇଁ, ନର୍ତ୍ତକ, ନର୍ତ୍ତକୀ ପ୍ରଭୃତି
3. ଦେଶ ବିଦେଶରେ, ଆମର ସୁନାମ ବଢ଼ଉଛନ୍ତି, କଳା ଓ ସଂସ୍କୃତିକୁ, ବିଭିନ୍ନ ସାଂସ୍କୃତିକ ଅନୁଷ୍ଠାନମାନେ, ଆମ ଦେଶର, ପ୍ରଚାର କରେଇ
4. ହେବା ଉଚିତ୍, ସଚେତନ, ଜନ ସମାଜ
5. ପ୍ରଗତି ହିଁ, ସେମାନଙ୍କର, କାରଣ, ପ୍ରଗତି, ଦେଶର

**III.** 'କ' ସ୍ତମ୍ଭର ଶବ୍ଦ ସହ ସମ୍ପର୍କ ଥିବା 'ଖ' ସ୍ତମ୍ଭର ଶବ୍ଦ ବାଛନ୍ତୁ ।

**(नीचे दिए गए (क) और (ख) स्तंभो के शब्दों का सही मिलान कीजिए।)**

| 'କ' | 'ଖ' |
|---|---|
| ନୃତ୍ୟ | ନର୍ତ୍ତକୀ |
| ଗାୟକ | ବିଦେଶ |
| ନର୍ତ୍ତକ | ସମାଜ |
| ଦେଶ | ସଙ୍ଗୀତ |
| ଜନ | ଗାୟିକା |

**IV.** ଓଡ଼ିଆରେ ଅନୁବାଦ କରନ୍ତୁ ।

**(ओड़िआ में अनुवाद कीजिए।)**

**शाहजहाँ ने अपनी पत्नी मुमताज की स्मृति में ताजमहल बनवाया था। इस सुंदर इमारत के निर्माण के लिए उन्होंने राजस्थान से संगमरमर और चीन से स्फटिक मंगवाए थे। विविध मणि, रत्न आदि विदेशों से मंगवाए थे। हजारों श्रमिकों ने इसे बनवाने में अपना पसीना बहाया था। ताजमहल बनवाने के लिए करोड़ों रुपए खर्च करवाये थे। धवल बर्फ जैसा सुंदर ताजमहल दर्शकों को आकर्षित करता है। दर्शकों को आकर्षित कराने में सरकार अब बहुत सारे विज्ञापन भी देते हैं। इस के फलस्वरूप हजारों पर्यटक इस को देखने के लिए आते हैं। कवियों ने इस के सौंदर्य से प्रभावित होकर कविताएँ लिखी हैं। कुछ लोगों ने तो इस भव्य भवन के निर्माण को शासन के अधिकार का दुरुपयोग माना है। इस को दुनिया का आठवाँ आश्चर्य भी माना जाता है। इस के अनुपम निर्माण कौशल ने बड़े-बड़े इंजीनियरों को हैरान किया है।**

**V.** ନିଜ ଝିଅକୁ ନାଚ ଶିଖେଇବା ପାଇଁ କଳାକେନ୍ଦ୍ରର ସଂପାଦକଙ୍କ ପାଖକୁ ଏକ ଦରଖାସ୍ତ ଲେଖନ୍ତୁ ।
**(अपनी बेटी को नृत्य शिखाने के लिए कलाकेंद्र संपादक के पास एक दरखास्त लिखिए।)**

## टिप्पणियाँ

**I.** **इस पाठ में निम्न प्रकार के वाक्यों का प्रयोग हुआ है।**

1- ଆମକୁ ଏଠି ବସେଇଦେଇ ମନ୍ତ୍ରୀଙ୍କ ପି.ଏ. କୁଆଡ଼େଗଲେ ?
**आमकु एठि बसेईदेइ मंत्रींक पि.ए कुआड़ेगले।**
**हमको यहाँ बिठाकर मंत्रीजी के पी.ए. कहाँ गए?**

2- ଗୋଟିଏ ଷ୍ଟାଡ଼ିୟମ୍ ସରକାରଙ୍କ ଦ୍ୱାରା କରେଇବା ଆମର ଉଦ୍ଦେଶ୍ୟ ।
**गोटिए ष्टाड़ियम् सरकारंक द्वारा करेईबा आमर उद्देश्य।**
**एक स्टेड़ियम सरकार के द्वारा बनवाना हमारा उद्येश्य है।**

3- ଆମ କେନ୍ଦ୍ର ପ୍ରତିବର୍ଷ ଓଡ଼ିଶାର ବିଭିନ୍ନ କଳାକେନ୍ଦ୍ର ମାଧ୍ୟମରେ ଏହି ଉତ୍ସବକୁ ଆୟୋଜନ କରେଇଥାଏ ।
**आम केंद्र प्रतिबर्ष ओड़िशार बिभिन्न कळाकेंद्र माध्यमरे एहि उत्सबकु आयोजन करेइथाए।**
**हमारा केंद्र हर साल ओड़िशा के विभिन्न कला केंद्रों माद्यम से ऐसी उत्सवों का आयोजन कराता है।**

4- ଆମେ 'ଓଡ଼ିଶୀ ନାଚ ଦଳ', 'ଯାତ୍ରାଦଳ', 'ଛଉନାଚ ଦଳ' ପ୍ରଭୃତି ପଠେଇଥାଉ ।
**आमे 'ओड़िशी नाच दळ', 'यात्रादळ', 'छउनाच दळ' प्रभृति पठेइथाउ।**
**हम 'ओड़िशी नृत्य दल', 'यात्रादल', 'छउ नृत्यदल' आदि भिजवाते हैं।**

5- ସେହି ଛୋଟ ସଭାମଞ୍ଚ ଉପରେ ନିଜର
**उस छोटे से मंच पर उन लोगों**

| | |
|---|---|
| ନୃତ୍ୟଶିଳ୍ପୀ ମାନଙ୍କୁ ନଚାଇଲେ ନାହିଁ । | **ने अपने नर्तकों से नहीं नचवाया।** |

**सेहि छोट सभामंच उपरे निजर नृत्यशिळ्पीमानंकु नचाइले नाहिं।**

**उपर्युक्त वाक्यों के रेखांकित क्रियाएँ, ओड़िआ की प्रेरणार्थक क्रियाएँ हैं। ये हिंदी के 'बिठाना', 'करवाना' 'भिजवाना' जैसी क्रियारूपों के समान हैं।**

**ओड़िआ में प्रेरणार्थक क्रियाएँ निम्न प्रकार से बनती हैं।**

| | |
|---|---|
| କରିବା - କରାଇବା<br>**करिबा - कराइबा** | **करना - करवाना** |
| ପଢ଼ିବା - ପଢ଼ାଇବା<br>**पढ़िबा - पढ़ाइबा** | **पढ़ना - पढ़वाना** |
| ଖେଳିବା - ଖେଳେଇବା<br>**खेळिबा - खेळेइबा** | **खेलना - खिलवाना** |

**मूलक्रिया के साथ '-ଆ' (आ) प्रत्यय जोडकर उसमें '-ଇବା' (-इबा) प्रत्यय लगाकर प्रेरणार्थक क्रियाएँ बनती हैं। जैसे:-**

**मूलक्रिया + -आ + -ईबा = प्रेरणार्थक क्रिया**

-କର୍ + -ଆ = -କରା + -ଇବା = କରାଇବା

**-कर् + -आ = -करा + -इबा = कराइबा**

-ପଢ୍ + -ଆ = -ପଢ଼ା + -ଇବା = ପଢ଼ାଇବା

**-पढ् + -आ = -पढ़ा + -इबा = पढ़ाइबा**

-ଲେଖ୍ + -ଆ = -ଲେଖା + -ଇବା = ଲେଖାଇବା

**-लेख् + -आ = -लेखा + -इबा = लेखाइबा**

**अपवाद के रूप में मूलक्रिया में कभी कभी परिवर्तन भी हो जाता है। उदाहरण:-**

| | |
|---|---|
| ଖାଇବା > ଖୁଆଇବା / ଖୁଏଇବା | **खाइबा > खुआइबा / खुएइबा** |
| ଶୋଇବା > ଶୁଆଇବା / ଶୁଏଇବା | **शोइबा > शुआइबा / शुएइबा** |
| ନାଚିବା > ନଚାଇବା / ନଚେଇବା | **नाचिबा > नचाइबा / नचेइबा** |

ମୁଁ କାମ କରୁଛି । मैं काम करता हूँ।

मुँ काम करुछि।

ମୁଁ କାମ କରଉଛି । मैं काम कराता हूँ।

मुँ काम करउछि

उपर्युक्त वाक्यों में ओड़िआ के क्रियारूप 'କରୁଛି' (करुछि), 'କରଉଛି' (करउछि), हिंदी के 'करता हुँ' और 'कराता हुँ' के समान हैं। हिंदि के 'करवाना' जैसा प्रयोग ओड़िआ में नहीं है।

वाक्य (5) में प्रेरणार्थक क्रिया के निषेध रूप का प्रयोग हुआ है। प्रेरणार्थक क्रिया के बाद 'ନାହିଁ' (नाहिं) 'नहीं' का प्रयोग कर उसका निषेध रूप बनाया गया है।

ओड़िआ में प्रेरणार्थक क्रियाएँ दूसरी क्रियाओं की तरह काल, पुरुष और वचन के अनुसार बदलती हैं।

# ପାଠ 22
# पाठ

## ବାହାଘର ଯୋଗାଡ଼
## बाहाघर जोगाड़

## शादी की तैयारी

| | | | |
|---|---|---|---|
| ଦାସ | : ନମସ୍କାର ମହାନ୍ତି ବାବୁ। ଆପଣଙ୍କର ଗୋଟିଏ ବୋଲି ଝିଅ! ତା'ର ବାହାଘର ଯୋଗାଡ଼ କେତେଦୂର ହୋଇଛି ? | दास | : नमस्कार महांति बाबू। आप की इकलौती बेटी! उसकी शादी की तैयारियाँ कहाँ तक (आई) हैं ? |
| ମହାନ୍ତି | : ଓହୋ ! ଆପଣଙ୍କୁ ଏବେ ସୁବିଧା ମିଳିଲା ନା? ମୁଁ ଏକୁଟିଆ ମଣିଷ। କେତେ ହଇରାଣ ହେଉଛି। କ'ଣ ଆପଣ ମତେ ସାହାଯ୍ୟ କରିବେନି? | महांति | : ओहो ! आप को अभी फुर्सत मिली? मैं अकेला आदमी हूँ। कितना परेशान हो रहा हूँ। क्या आप मेरी मदद नहीं करेंगे? |
| ଦାସ | : ମୁଁ ତ ଆପଣଙ୍କୁ ଅଭିଯୋଗ କରିବି ବୋଲି ଭାବୁଥିଲି। ବାହାଘର ତ କେବଳ ଗୋଟିଏ ମାସ ରହିଲା ଆଉ ମୋତେ କିଛି କାମ ଦେଲେ ନାହିଁ। ଏହାଦ୍ୱାରା ମୋତେ ବହୁତ ଖରାପ ଲାଗିଲା। ଆପଣ କ'ଣ ଭାବି ରଖିଛନ୍ତି ? ଆପଣ କ'ଣ ଏକୁଟିଆ ସବୁ କରି ପକାଇବେ ଆଉ ଆମ ପରି ବନ୍ଧୁର କ'ଣ ସାହାଯ୍ୟ ନେବେନି? | दास | : मैं तो आप से शिकायत करने को सोच रहा था। शादी के तो केवल एक ही महीना रह गया है और मुझे कुछ काम नहीं दिया है। इस से मुझे बहुत बुरा लगा है। आप ने क्या सोच रखा है? क्या आप अकेले ही सब काम कर डालेंगे और हम जैसे मित्रों की मदद नहीं लेंगे? |

| | |
|---|---|
| ମହାନ୍ତି : ଆରେ ଭାଇ, ରାଗ ନାହିଁ କିମ୍ବା ଖରାପ ଭାବ ନାହିଁ। ମୁଁ ଏକୁଟିଆ ସବୁକାମ କେମିତି କରିବି? ମୁଁ କିଛି କରିପାରିଲି ନାହିଁ। ଏଣୁ ବର୍ତ୍ତମାନ ଆପଣଙ୍କ ସାହାଯ୍ୟ ମୁଁ ପଚାରିଲି। ବାହାଘରର ସବୁ କାମ ଆମେ ସବୁ ମିଶିକି କରିବା। ଭାଉଜଙ୍କୁ ମଧ୍ୟ ଏହି କଥା କହିଦେବେ। ମଙ୍ଗଳପାକ ଦିନ ସବୁକାମ ତାଙ୍କୁ ହିଁ କରିବାକୁ ପଡ଼ିବ। ମୁଁ ଜାଣିଛି କି ସେ ନିଜେ ହିଁ ସବୁକାମ ଉଠାଇନେବେ। ସେ ଆଉ ମୋ ସ୍ତ୍ରୀ ଦୁହେଁ ମିଶି ଆମ ସାହିରେ ନିମନ୍ତ୍ରଣ ପତ୍ର ବାଣ୍ଟିଦେବେ। | महांति : अरे भाई, गुस्सा मत करो और बुरा मत समझो। मैं अकेले सब काम कैसे करूँगा? मैं कुछ नहीं कर पाया। इसलिए अभी तुम्हारी मदद मैं ने माँगी। शादी के सब काम हम सब मिलकर ही करेंगे। भाभी से भी यही बात कह देना। मंगलपाक के दिन के सब काम उन को ही करना पडेगा। मुझे मालुम है कि अपने आप वे सब काम उठा लेंगी। वे और मेरी पत्नि दोनों मिलकर ही गली में निमत्रंण पत्र बाँटेंगी। |
| ଦାସ : ହଁ, ସେ କାମ ସେ କରିଦେବେ। ଆପଣ ଚିନ୍ତା କରନ୍ତୁ ନାହିଁ। ଆଉ ବାହାଘର ଦିନ କନ୍ୟାକୁ ସଜ କରିବା ଦାୟିତ୍ୱ ମଧ୍ୟ ତାଙ୍କର। ଏଇ ସବୁ କାମ କରିବାକୁ ତାଙ୍କୁ ବହୁତ ଭଲ ଲାଗିବ। | दास : हाँ, यह काम वह कर लेगी। आप चिंता मत कीजिए। शादी के दिन कन्या के श्रृंगार करने का दायित्व भी उनका। ये सब काम करना उनको बहुत अच्छा ही लगेगा। |
| ମହାନ୍ତି : ଶୁଣନ୍ତୁ ଦାସବାବୁ, ଆପଣ ବେଦୀ ସଜ କରିବା ଦାୟିତ୍ୱ ବି ନେବେ। ଫୁଲ, ତମ୍ବୁ, ବିଜୁଳି ଆଲୁଅ ସବୁ ଆପଣଙ୍କୁ ବୁଝିବାକୁ ହେବ। | महांति : सुनिए दास बाबु ! मंडप सजाने का दायित्व भी आप लेंगे। फूल, तंबू, बिजली, चिराग सब की देखरेख आप करेंगे। |
| ଦାସ : ଶଙ୍ଖୁଆ ମହୁରିଆକୁ ବି ବରାଦ ଦେବାକୁ ହେବ। ଆଚ୍ଛା, ବରଯାତ୍ରୀ କେତେଜଣ ଆସୁଛନ୍ତି ? | दास : शंखवादक और शहनाईवादक को भी आर्डर देना होगा। अच्छा। कितने बाराती आ रहे हैं? |
| ମହାନ୍ତି : ମୋ ସମୁଦି ଭାରି ଭଲ ଲୋକ। ନଚେତ୍ ଆମକୁ ବହୁତ ଅସୁବିଧା | महांति : मेरे संबंधी बहुत अच्छे आदमी हैं। नहीं तो हम को अब तक बहुत तकलीफ उठाना पड़ता। अपव्यय |

| | | | |
|---|---|---|---|
| | ଉଠାଇବାକୁ ପଡ଼ିଥାଆନ୍ତା । ଅଯଥା ଖର୍ଚ୍ଚ କରିବାକୁ ସଫା ସଫା ମନା କରିଦେଲେ । ଅଳ୍ପ ଲୋକ ଆସିବେ । ପୁଅ ରୂପକକୁ କହିବେ ସେ ବରଯାତ୍ରୀ ମାନଙ୍କର ଦେଖାଶୁଣା କରିବା ଦାୟିତ୍ୱ ନେଉ । | | करने से साफ-साफ मना कर दिया है। बहुत कम लोग आएँगे। (अपने) बेटे रूपक से कहना कि बारातियों की देखभाल (करने) का दायित्व ले। |
| ଦାସ | : ହଁ, ହଁ, ସେ ତ ଗୋଡ଼ ଟେକି ବସିଛି । ବର ବରଣଠୁଁ ଆରମ୍ଭ କରି କନ୍ୟା ବିଦା ପର୍ଯ୍ୟନ୍ତ ବରଯାତ୍ରୀ ବରଯାତ୍ରୀଙ୍କ ଦାୟିତ୍ୱ ସବୁ ରୂପକ ନେବ । ତାକୁତ ବହୁତ ଖୁସି ଲାଗିବ । | दास | : हाँ, हाँ वह तो कमर कस के बैठा है। पाणिग्रहण के आरंभ से कन्या-विदा (विदाई) तक बारातियों का सब दायित्व रूपक लेगा। उसको बहुत् खुशी लगेगी। |
| ମହାନ୍ତି | : ସବୁ କାମ ଯୋଗାଡ଼ କରିବା ପାଇଁ ଆଗରୁ ମୁଁ ତା ହାତରେ କିଛି ଟଙ୍କା ଦେଇଦେବି । | महांति | : सब काम का इंतज़ाम करने केलिए मैं पहले ही उसके हाथ कुछ रुपए दे दूँगा। |
| ଦାସ | : ନାଇଁ ଆଜ୍ଞା, ସେମିତି କରିବେନି । ପିଲାଲୋକ, କେତେବେଳେ ଯେ, କ'ଣ କରିବସିବ, କିଏ ଜାଣେ? ଆମେ ବି କିଛି କରିପାରିବା ନାହିଁ । | दास | : नहीं जी, वैसा मत कीजिएगा। (करना)। बच्चा है, कब क्या कर बैठेगा, कौन जानता है? हम कुछ भी बोल नहीं सकते। |
| ମହାନ୍ତି | : ଆଚ୍ଛା, ଆପଣଙ୍କ କଥା ହିଁ ରହୁ । | महांति | : अच्छा, आपकी ही बात रहे। |
| ଦାସ | : 'ନବକିରଣ ଟେଣ୍ଟ ହାଉସ୍' କୁ ଆଜି ଅଗ୍ରିମ ଦେଇଦେବା । ଭୋଜି କଥା କ'ଣ ସ୍ଥିର କଲେ? କୁକୁଡ଼ା ବରାଦ କରିବା ନା ମାଛରେ କାମ ଚଳିଯିବ ? | दास | : 'नवकिरण टेन्ट-हाउस' को आज अग्रिम (पेशगी) दे देंगे। भोजन के बारे में क्या तय किया है? मुर्गि का आर्डर देंगे या मछली से काम चल जाएगा? |
| ମହାନ୍ତି | : କ'ଣ ପିଲାମାନେ କେବଳ ମାଛରେ ରାଜି ହେବେ କିମ୍ବା କୁକୁଡ଼ା କିଣିବାପାଇଁ କହିବେ? ହେଲେ | महांति | : क्या बच्चे केवल मछलि से ही राजि होंगें या मुर्गे खरीदने केलिए बोलेगें? लेकिन शादी के दिन भोजन का काम भी आपको ही |

| | |
|---|---|
| ବାହାଘର ଦିନ ଭୋଜିର କାମ ମଧ୍ୟ ଆପଣଙ୍କୁ ତୁଲାଇବାକୁ ପଡ଼ିବ । ସମସ୍ତେ ଯେମିତି ଭଲରେ ଖାଇବେ ଆପଣ ଦେଖିବେ । | निपटाना पड़ेगा। सब अच्छी तरह खाएँगे, उसका आप निरीक्षण करेंगे। |
| ଦାସ : ଆପଣ ସେ ବିଷୟରେ ନିଶ୍ଚିନ୍ତ ରୁହନ୍ତୁ । ଝିଅର ଗହଣା, ଶାଢ଼ୀ କିଣି ସାରିଲେଣି ? | दास : आप इस संबंध में निश्चिंत रहिए। अच्छा, क्या बेटी के गहने, साड़ी आदि खरीद चुके? |
| ମହାନ୍ତି : କେଉଁଠି ଆଉ କିଣିଲି ? ଅଫିସର ଭବିଷ୍ୟନିଧି ପାଣ୍ଠିର ଟଙ୍କାତ ଏଯାଏଁ ମିଳିଲାନି । | महांति : अरे, कहाँ खरीदे? भविष्यनिधि का पैसा तो अब तक नहीं मिला। |
| ଦାସ : ଆପଣ କ'ଣ ଉପର ଅଫିସରଙ୍କୁ ଦରଖାସ୍ତ କରିଛନ୍ତି ନା ଏବେ ଦେବେ ? | दास : क्या अपने बड़े अफसर को दरखास्त दिया है या अभी देना है? |
| ମହାନ୍ତି : ହଁ, ବହୁତ ଦିନ ହୋଇଗଲାଣି ଦରଖାସ୍ତ କରିଥିଲି । | महांति : हाँ, बहुत दिन हो गये दरखास्त दिए। |
| ଦାସ : ତେବେ ବର୍ତ୍ତମାନ ଚାଲନ୍ତୁ ଭବିଷ୍ୟନିଧି ଅଫିସ୍ ଯିବା । ଯେକୌଣସିମତେ ମଂଜୁରୀ କରିବାକୁ ପଡ଼ିବ । | दास : तो, अब चलिए, भविष्यनिधि ऑफिस जाएँगे। जैसे भी हो, मंजूरी करानी पडेगी। |
| ମହାନ୍ତି : ଆଜ୍ଞା, ବହୁତ ଧନ୍ୟବାଦ । ଅଳ୍ପ ସମୟ ଅପେକ୍ଷା କରନ୍ତୁ । ଆମେ ବାହାରକୁ ଯିବା ପୂର୍ବରୁ ଦୟାକରି ଆପଣ ବାହାଘର ନିମନ୍ତ୍ରଣ ପତ୍ରଟା ଦେଖି ଦିଅନ୍ତୁ । ପଢ଼ନ୍ତୁ ଏବଂ କୁହନ୍ତୁ ଠିକ୍ ଅଛି କି ? | महांति : बहुत धन्यवाद जी। थोड़ी देर इंतजार कीजिए। हम लोग बाहर जानेसे पहले कृपया आप शादि के निमंत्रण पत्र देख लीजिए। पढ़िए और कहिए ठीक है कि नहीं। |
| ଦାସ : ଦିଅନ୍ତୁ, ଦିଅନ୍ତୁ, ମୁଁ ପଢ଼ିବି । | दास : दीजिए दीजिए, मैं पढ़ूँगा। |
| ମହାନ୍ତି : ଠିକ୍ ଅଛି । | महांति : ठीक है। |

## शब्दार्थ

| **ओड़िआ शब्द** | **हिंदी अर्थ** |
|---|---|
| ଗୋଟିଏ ବୋଲି | एक मात्र |
| ଗୋଟିଏ ମାସ | एक महिना |
| ରାଗନାହିଁ | गुस्सा मत करो |
| କେମିତି | कैसे |
| ନଚେତ୍ | नहीं तो |
| ଆମକୁ ବହୁତ | हमको ज्यादा |
| ଅସୁବିଧା ଉଠାଇବାକୁ | तकलीफ उठाने को |
| ପଡ଼ିଥାଆନ୍ତା | पड़ता था |
| କିଏଜାଣେ | कौन जानता है |
| କହି ପାରିବାନାହିଁ | बोल नहीं सकते |
| ଯୋଗାଡ଼ | इंतजाम |
| କେତେଦୂର | कितनी दूर (कहाँतक) |
| ସୁବିଧା | सुविधा, आसान |
| ଏକୁଟିଆ | अकेले |
| ହଇରାଣ | हैरान, परेशान |
| ସାହାଯ୍ୟ କରିବ | मदद करना |
| ଅଭିଯୋଗ କରିବି | शिकायत करूँगा |
| ବାହାଘର | शादी |
| କାମ ଦେଲେନି | काम नहीं दिया |
| କରି ପକେଇବେ | कर डालेंगे |
| ସମ୍ଭବ | संभव |
| କହିଦବ | कह देना |
| ମଙ୍ଗଳପାକ | 'मंगल पाक' शादी का पहला दिन |
| ମିଳିକରି | मिलकर |
| ଚିନ୍ତା | सोचना |

| | |
|---|---|
| ସଜ କରିବା | श्रृंगार करना |
| ଦାୟିତ୍ୱ | दायित्व |
| ତମ୍ବୁ | तंबू |
| ବିଜୁଳି ଆଲୁଅ | बिजली का आलोक |
| ଶଙ୍ଖୁଆ | शंख बजानेवाला |
| ମହୁରିଆ | शहनाई बजानेवाला |
| ବରଯାତ୍ରୀ | बाराती |
| ବନ୍ଧୁର | मित्र का |
| ସାହାଯ୍ୟ | सहायता |
| ଅଫିସ୍ | ऑफिस |
| ଭବିଷ୍ୟନିଧି ପାଣ୍ଠି | भविष्यनिधि पाण्ठि |
| ଟିକିଏ ମୁହୂର୍ତ୍ତ | थोडी देर |
| ଅପେକ୍ଷା କରନ୍ତୁ | इंतजार कीजीए |
| ବାହାରକୁ ଯିବାପୂର୍ବରୁ | बाहर जानेके पहले |
| ନିମନ୍ତ୍ରଣ ପତ୍ର | निमंत्रण पत्र |
| ଠିକ୍ ଅଛି | ठीक है |

## ଅଭ୍ୟାସ
## अभ्यास

I. (1) ନିମ୍ନରେ ଦିଆଯାଇଥିବା ବାକ୍ୟ ଗୁଡ଼ିକୁ ଅଭ୍ୟାସ କରନ୍ତୁ।
(नीचे दिए गए वाक्य दोहराइए।)

1. ଆପଣ ମତେ ସାହାଯ୍ୟ କରିବେଟି ?
2. ମୁଁ ଅଭିଯୋଗ କରିବି ବୋଲି ଭାବୁଥିଲି।
3. ଆମକୁ କିଛି ହେଲେ କାମ ଦେଲେନି।
4. ଆପଣ କ'ଣ ଏକା ଏକା ସବୁ କାମ କରି ପକେଇବେ ?
5. ଆପଣ ଭାଉଜଙ୍କୁ କହିଦେବେ।

6. ହଁ, ସେ କାମ ସେ କରିନେବେ ।
7. ବାହାଘର ଦିନ କନ୍ୟାକୁ ସଜ କରିବା ଦାୟିତ୍ୱ ମଧ୍ୟ ତାଙ୍କର ।
8. ଯେ କୌଣସି ମତେ ମଂଜୁରୀ କରିବାକୁ ପଡ଼ିବ ।
9. ଆରେ ଭାଇ, ରାଗ କର ନାହିଁ କିମ୍ବା ଖରାପ ବୁଝ ନାହିଁ ।
10. ମଙ୍ଗଳପାକ ଦିନ ସବୁ କାମ ତାଙ୍କୁ ହିଁ କରିବାକୁ ପଡ଼ିବ ।

II. ରେଖାଙ୍କିତ ଶବ୍ଦ ସ୍ଥାନରେ ଦିଆଯାଇଥିବା ଶବ୍ଦ ଗୁଡ଼ିକୁ ବ୍ୟବହାର କରି ବାକ୍ୟ ଗଠନ କରନ୍ତୁ ।

**(रेखांकित शब्दों के स्थान पर दिए गए शब्दों का प्रयोग कर नये वाक्य बनाइए।)**

1) ଆପଣ ମତେ ସାହଯ୍ୟ କରିବେଟି ?

ଦୟା
କ୍ଷମା
ସମ୍ମାନ
ଆଦର
ସ୍ନେହ

2) ଆମକୁ କିଛି ହେଲେ କାମ ଦେଲେନି ।

ତାକୁ
ସେମାନଙ୍କୁ
ପିଲାମାନଙ୍କୁ
ଝିଅମାନଙ୍କୁ
ତୁମମାନଙ୍କୁ

3) ଆପଣ କ'ଣ ଏକା ଏକା ସବୁକାମ କରି ପକେଇବେ ?

| | |
|---|---|
| ତୁମେ | ପକେଇବ |
| ତୁ | ପକେଇବୁ |
| ସେ | ପକେଇବେ |
| ସେମାନେ | ପକେଇବେ |
| ଆପଣମାନେ | ପକେଇବେ |

4) ସେ କାମ ସେ କରି ନେବେ ।

| | |
|---|---|
| ମୁଁ | ନେବି |
| ତୁ | ନେବୁ |
| ତୁମେ | ନେବ |

5) କୌଣସି ମତେ ମଂଜୁରୀ କରିବାକୁ ପଡ଼ିବ ।

| | |
|---|---|
| ପାଠ | ପଢ଼ିବାକୁ |
| କାମ | ଦେଖିବାକୁ |
| ଦରଖାସ୍ତ | ଦେବାକୁ |

| | |
|---|---|
| ସେମାନେ ନେବେ | ଖୁସି କରିବାକୁ |
| ବୋଉ ନେବ | ପ୍ରଶଂସା କରିବାକୁ |

III. ଉଦାହରଣ ଅନୁଯାୟୀ ନିମ୍ନ ବାକ୍ୟ ଗୁଡ଼ିକୁ ପରିବର୍ତ୍ତନ କରନ୍ତୁ।
(उदाहरण के अनुसार नीचे दिए गए वाक्यों का परिवर्त्तन कीजिए।)

ଉଦାହରଣ :- ତୁମେ ଭାଉଜଙ୍କୁ କହିବ।
ତୁମେ ଭାଉଜଙ୍କୁ କହିଦେବ।

1. ତୁମେ କାମଟା ଜଲଦି କରିବ।
2. ଆପଣ ସ୍ତ୍ରୀଙ୍କୁ ଦେବେ।
3. ସେମାନେ ସବୁକାମ କରିବେ।
4. ସେ ପାଠ ପଢ଼ିବ।
5. ତୁମେ କଟକରୁ ଗୋଟିଏ ବହି ଆଣିବ।

IV. ଉଦାହରଣ ଅନୁସାରେ ବନ୍ଧନୀ ମଧ୍ୟରେ ନିମ୍ନରେ ଦିଆଯାଇଥିବା ସର୍ବନାମର ଉପଯୁକ୍ତ ରୂପ ପ୍ରୟୋଗ କରି ବାକ୍ୟ ବିସ୍ତାର କରନ୍ତୁ।
(उदाहरण के अनुसार कोष्ठक में दिए गए सर्वनामों के उपयुक्त रूपों का प्रयोग कर वाक्य बनाइए।)

ଉଦାହରଣ :- ଖୁସି ଲାଗିବ।
ତାକୁ ଖୁସି ଲାଗିବ। (ତାକୁ)

1. ଦୁଃଖ ଲାଗିବ (ମୁଁ)
2. ଆନନ୍ଦ ଲାଗିବ (ତୁ)
3. ରାଗ ଲାଗିବ (ସେମାନେ)
4. ଭୟ ଲାଗିବ (ତାଙ୍କୁ)
5. ଥଣ୍ଡା ଲାଗିବ (ଆପଣ)

V. ବନ୍ଧନୀରେ ଦିଆଯାଇଥିବା ଶବ୍ଦ ମଧ୍ୟରୁ ଉପଯୁକ୍ତ ଶବ୍ଦ ବାଛି ବାକ୍ୟ ପୂରଣ କରନ୍ତୁ।
(कोष्ठक में दिए गए शब्दों में से उपयुक्त शब्द चुन कर वाक्य पूरे कीजिए।)

(କରିଦେବୁ, ବରାଦ, ଖାଇଦେବ, ନେଇନେବେ, ଅପେକ୍ଷା, ବାଣ୍ଟିନେବେ, ପ୍ରଶଂସା, ଦାୟିତ୍ୱ, ସାହାଯ୍ୟ, କରିପକାଇବେ)

1. ଆପଣଙ୍କ ସ୍ତ୍ରୀଙ୍କୁ ______।
2. ପିଲାମାନେ ଭୋଗ ______।
3. ତୁ ନିଜ କାମ ନିଜ ହାତରେ _____।
4. ତୁମେମାନେ ପିଠା _____।

5. ସେ ଭଲ ନାଚ କରି ଅନେକ ______ ପାଇଲା ।
6. ମୁଁ କାଲି ସଂଧ୍ୟାବେଳେ ତୁମକୁ ______ କରିଥିବି ।
7. ବାହାଘର ଦିନ _____ କରିବ ।
8. ଝିଅକୁ ସଜ କରିବା _____ ନେବ ।
9. ଭୋଜି ପାଇଁ ମାଛ ______ କରିବ ।
10. ଆପଣ କ'ଣ ଏକୁଟିଆ ସବୁ ______ ।

**VI.** ବନ୍ଧନୀ ମଧ୍ୟରେ ଦିଆଯାଇଥିବା ଉପଯୁକ୍ତ କ୍ରିୟାଗୁଡ଼ିକର ରୂପ ବାଛି ବାକ୍ୟ ପୂରଣ କରନ୍ତୁ ।
(कोष्ठक में से उपयुक्त क्रीया रूप चुन कर वाक्य पूरे किजिए।)

(ଶୁଣି ନେଇଥିଲି, ଦେଇ ଦେଇଥିଲେ, ଲେଖି ଦେଇଥିଲେ, ଆଣି ଦେଇଥିଲେ, ପିଇ ନେଇଥିଲା, ପଚାରି ନେଇଥିଲେ, ଆସି ବସିଥିଲେ, ପିନ୍ଧି ନେଇଥିଲେ, କରିପାରିଥିଲ, ପକାଇଦେଇଥିଲ)

1. ମୁଁ ଏହି କାହାଣୀ ବିଷୟରେ ବହୁତ ଆଗରୁ ______ ।
2. ମୁଖ୍ୟମନ୍ତ୍ରୀ କ'ଣ ଭାଷଣ ______ ।
3. ବିମଳ ବିଷୟରେ ସେ କ'ଣ ______ ।
4. ତୁମେ ନିଜକୁ କ'ଣ କ୍ଷମା ______ ।
5. ମୋ ଝିଅ ଦୁଧ କେତେବେଳୁ ______ ।
6. ଶର୍ମିଳା ଦିଲ୍ଲୀରୁ ଏହି ବହିଟି ______ ।
7. ସେମାନେ ମୋ ଘରେ ______ ।
8. ମୋ ମା' ନୂଆ ଶାଢ଼ୀ ______ ।
9. ସେ ମୋତେ ଏହି ବହିଟି ______ ।
10. ତୁମେ ଏଇ ଚିଠିଟି ଡାକଘରେ ______ ।

**VII.** ବନ୍ଧନୀରେ ଦିଆଯାଇଥିବା ଉପଯୁକ୍ତ ସଂଯୁକ୍ତ କ୍ରିୟାଗୁଡ଼ିକୁ ବାଛି ତାହାର ଠିକ ରୂପ ପ୍ରୟୋଗ କରି ବାକ୍ୟ ପୂରଣ କରନ୍ତୁ ।
(कोष्ठक में दिए गए संयुक्त क्रियाओं के उपयुक्त रूपों का प्रयोग कर वाक्य पूरे कीजिए।)

ଉଦାହରଣ :- ମୋ ଛୋଟ ଭାଇ ମଧ୍ୟ ଏକ ଗୀତ <u>ଗାଇଦେଇଥିଲା</u> ।

(ବୁଝିନେବା, ଆନନ୍ଦ ନେବା, କରି ଦେଖାଇବା, ଦେଇଦେବା, ଶୋଇଯିବା, ଖାଇନେବା, ଗାଇଦେବା, ଆସିଯିବା, ଛାଡ଼ିଦେବା, ଲେଖି ପକାଇବା)

1. ମୁଁ କେତେବେଳୁ ______ ପାଇଁ ଚେଷ୍ଟା କରୁଛି ।

2. ସେ ଗୀତଟି ______ ପରେ ତାଙ୍କୁ ପ୍ରଶଂସା ମିଳିଲା।
3. ଆପଣମାନେ ______ ପରେ ଘର, ଘର ଭଳି ଲାଗିଲା।
4. ତାଙ୍କୁ ______ ପାଇଁ ମୋତେ ବେଶୀ ସମୟ ଲାଗିବ ନାହିଁ।
5. ଆମେମାନେ ଗୀତ ଗାଇ ______।
6. ସେ କ'ଣ ______ ମୁଁ ଠିକ୍ ଜାଣିଛି।
7. ମୁଁ ତାଙ୍କୁ ଏହି ବହିଟି ______।
8. ମା' ଘରକୁ ଆସିବା ପୂର୍ବରୁ ପିଲାଟି ______।
9. ବାହାଘର ପରେ ଝିଅକୁ ବର ସହିତ ______।
10. ମୁଁ ଆଜି ଡାକଘରେ ଚିଠି ______।

**VII.** ବନ୍ଧନୀ ମଧ୍ୟସ୍ଥ ହିନ୍ଦୀ କ୍ରିୟାରୂପର ସମାନାର୍ଥକ ଓଡ଼ିଆ ରୂପ ପ୍ରୟୋଗ କରି ବାକ୍ୟ ପୂରଣ କରନ୍ତୁ।
(कोष्ठक में दिए गए हिंदी क्रियारूपों के समानार्थक ओड़िआ रूपों का प्रयोग कर वाक्य पूरे कीजिए)

1. ବାହାଘର ଦିନ ମୁଁ ସବୁ କାମ ______। (कर दूँगी)
2. ସେ ସବୁ କାମ _____ । (कर लेगा)
3. ସେ ସବୁ କାମ ଅଳ୍ପ ସମୟ ଭିତରେ _____। (कर डालेगी)
4. ସେ ଯେ କ'ଣ _____ ମୁଁ ଜାଣେନା। (कर बैठेगा)
5. ମୁଁ କ'ଣ _____ ? (कर पाना)

**IX.** ଉଦାହରଣ ଅନୁସାରେ ନିମ୍ନରେ ଦିଆଯାଇଥିବା କ୍ରିୟାଗୁଡ଼ିକର ଦଶ ଦଶ ପ୍ରକାର ରୂପ ପ୍ରୟୋଗ କରି ବାକ୍ୟ ଗଠନ କରନ୍ତୁ। ପ୍ରତ୍ୟେକ ବାକ୍ୟରେ ଅତି କମରେ ଚାରୋଟି ଶବ୍ଦ ହେବା ଦରକାର।

(उदाहरण के अनुसार दिए गए प्रत्यक क्रिया के दस दस प्रकार के रूपों का प्रयोग कर वाक्य बनाइए। प्रत्येक वाक्य में कम से कम चार शब्द होना जरुरी है।)

ଉଦାହରଣ :- ପଢ଼ିବା

1) ମୁଁ ରମାଦେବୀ କଲେଜରେ ପଢୁଛି।
2) ମୁଁ ରମାଦେବୀ କଲେଜରେ ବି.ଏ. ପଢ଼ିଲି।
3) ମୁଁ ରମାଦେବୀ କଲେଜରେ ପଢ଼ିବି।
4) ବର୍ତ୍ତମାନ ବି ମୁଁ ରମାଦେବୀ କଲେଜରେ ପଢୁଅଛି।
5) ସେହିସମୟରେ ମୁଁ ରମାଦେବୀ କଲେଜରେ ପଢୁଥିଲି।

6) ପାଞ୍ଚବର୍ଷପରେ ଯେତେବେଳେ ତୁମେ ଆସିବ ସେତେବେଳେ ମୁଁ ରମାଦେବୀ କଲେଜରେ ପଢୁଥିବି ।

7) ମୁଁ କେବଳ ଗୋଟିଏ ବର୍ଷ ରମାଦେବୀ କଲେଜରେ ପଢ଼ିଅଛି ।

8) ମୁଁ ମଧ୍ୟ ବହୁତ ଆଗରୁ ରମାଦେବୀ କଲେଜରେ ବି.ଏ. ପଢ଼ିଥିଲି ।

9) ମୁଁ ମଧ୍ୟ ବହୁତ ଆଗରୁ ରମାଦେବୀ କଲେଜରେ ବି.ଏ. ପଢ଼ିଥିବି ।

10) ମୁଁ ରମାଦେବୀ କଲେଜରେ ପଢୁଥିବା ସମୟରେ ତୁମେ ମଧ୍ୟ ସେଠାରେ ପଢୁଥିଲ ।

(ଯିବା, ଦେଖିବା, ଲେଖିବା, ଖେଳିବା)

## ପଢ଼ନ୍ତୁ ଓ ବୁଝନ୍ତୁ

**ବିବାହ ନିମନ୍ତ୍ରଣ ପତ୍ର**

**ଓଁ ଶ୍ରୀ ଶ୍ରୀ ପ୍ରଜାପତୟେ ନମଃ**

ମହାଶୟ,

ଆପଣ ଜାଣି ଖୁସି ହେବେ ଯେ, ମୋର ଜ୍ୟେଷ୍ଠା କାନ୍ୟା ଆୟୁଷ୍ମତୀ ଚାରୁସ୍ମିତାର କାକଟପୁର ନିବାସୀ ପ୍ରମୋଦ ମହାନ୍ତିଙ୍କ ଜ୍ୟେଷ୍ଠପୁତ୍ର ଆୟୁଷ୍ମାନ ଚିରଞ୍ଜିବୀଙ୍କ ସହିତ ଶୁଭପରିଣୟ ଆଷାଢ଼ କୃଷ୍ଣ ଚତୁର୍ଦ୍ଦଶୀ ତା ୨୬.୦୭.୨୦୦୫ ରିଖରେ ମଦୀୟ ବାସଭବନରେ ଅନୁଷ୍ଠିତ ହେବ ।

ଅନୁରୋଧ ଆପଣ ସପରିବାରେ ମୋର ବାସଭବନରେ ପଦାର୍ପଣ କରି ବର କନ୍ୟାକୁ ଆଶୀର୍ବାଦ କରିବା ହେବେ । । ଇତି ।

ଆପଣଙ୍କର ଦର୍ଶନାଭିଳାଷୀ
ସରୋଜ ମହାନ୍ତି

-: କାର୍ଯ୍ୟ ନିର୍ଘଣ୍ଟ :-

ତା ୨୫.୦୭.୨୦୦୫ (ବୁଧବାର) : ମଙ୍ଗଳପାକ

ତା ୨୬.୦୭.୨୦୦୫ (ଗୁରୁବାର) : ବିବାହ, ପାଣିଗ୍ରହଣ ଓ
ପ୍ରୀତି ଭୋଜନ ସନ୍ଧ୍ୟା ୭ ଘଟିକା

**शब्दार्थ**

| **ओड़िआ शब्द** | **हिंदी अर्थ** |
|---|---|
| ଖୁସିହେବେ | आनंद होगा, खुशी होगा |

| | |
|---|---|
| ନିବାସୀ | निवासी |
| ମଦୀୟ୍ | मेरा |
| ବାସଭବନ | वास-भवन, निवास |
| ଅନୁଷ୍ଠିତ ହେବ | संपन्न होगा |
| ସପରିବାରେ | सपरिवार |
| ପଦାର୍ପଣ କରି | उपस्थित हो कर |
| ବର-କନ୍ୟା | वर-वधु |
| ଆଶୀର୍ବାଦ | आशीर्वाद |
| ଦର୍ଶନାଭିଳାଷୀ | दर्शनाभिलाषी |

## ପଢ଼ନ୍ତୁ ଓ ବୁଝନ୍ତୁ

### ରଜପର୍ବ
### रजपर्ब

ଓଡ଼ିଶା ଏପରି ଏକ ରାଜ୍ୟ ଯାହାର ପ୍ରାଚୀନ ଐତିହ୍ୟ ଅଛି ଆଉ ପୁରାତନ ସଂସ୍କୃତି ବି ଅଛି। ସେଠାରେ ବାର ମାସରେ ତେର ଯାତ୍ରା। କେତେ ଓଷା ବ୍ରତ ଆଉ କେତେ ପର୍ବପର୍ବାଣୀ। କେତେ ପୂଜାବିଧୀ ଆଉ କେତେ ପିଠାପଣା। ସେମିତି ଗୋଟିଏ ପର୍ବ ରଜପର୍ବ। ଦିନେ ନୁହେଁ କିମ୍ବା ଦୁଇଦିନ ନୁହେଁ ଦୀର୍ଘ ୩ ଦିନ ଧରି ରାଜ୍ୟର ଏ ମୁଣ୍ଡରୁ ସେମୁଣ୍ଡ ଯାଏଁ ଗାଁ, ଗଣ୍ଡା ଆଉ ପୁରପଲ୍ଲୀ ସବୁଆଡ଼େ ଜାକଜମକରେ ପାଳିତ ହୋଇଥାଏ। ଜାତିଭେଦ ନିର୍ବିଶେଷରେ ଉଚ୍ଚ ନୀଚ ସମସ୍ତଙ୍କ ଘରେ ଓ ସହରପଲ୍ଲୀରେ ଏହି ପର୍ବ ଚାରିଆଡ଼େ ପାଳିତ କରାଯାଇଥାଏ। ତେଣୁ ଏହା ଓଡ଼ିଶାର ଏକ ମୁଖ୍ୟ ପର୍ବ।

ଆଷାଢ଼ ମାସରେ ପଡୁଥିବା ସଂକ୍ରାନ୍ତିକୁ ରଜସଂକ୍ରାନ୍ତି କୁହାଯାଏ। ସଂକ୍ରାନ୍ତିର ପରଦିନକୁ ଭୂମିଦହନ କୁହାଯାଏ। ଏହି ଦିନ ଭୂମିକୁ ଖୋଳା ଖୋଳି କରିବା ନିଷେଧ ଏବଂ ଶେଷ ଦିନ ଅର୍ଥାତ୍ ଚତୁର୍ଥ ଦିନ ସକାଳେ ବସୁମତି ସ୍ନାନ ଏବଂ ରଜପାଳନ ଶେଷ କରାଯାଇଥାଏ। ଆଷାଢ଼ ମାସରେ ସାଧାରଣତଃ ବର୍ଷାର ଆଗମନ ହେବ। ଶୁଖିଲା ଭୂମିରେ ବର୍ଷାର ପ୍ରଥମ ଅସରା ପଡ଼ିବା ମାତ୍ରେ ମାଟିର ଏକ ପ୍ରଜନନ ଶକ୍ତି ଜାଗ୍ରତ ହେବ। ଏହି ସମୟରେ ଧରଣୀ ରାଣୀକୁ ରଜସ୍ୱଳା ନାରୀ ସହ ତୁଳନା କରାଯାଇଥାଏ। ସେହିଦିନ କୁମାରୀ କନ୍ୟାମାନେ ଭୂଇଁରେ ଖାଲିପାଦରେ ଚାଲନ୍ତି ନାହିଁ। ସେମାନେ ଗୁଆଖୋଳ, କଦଳୀ ବାହୁଙ୍ଗା ଆଉ ନୂଆ ଚପଲ ପିନ୍ଧନ୍ତି। ତିନିଦିନ ଯାଏ ସ୍ନାନ କରିବା ନିଷେଧ। ଲୁଣ ଖାଇବା ମଧ୍ୟ ମନା। ସେଇ ୩ ଦିନ ପିଠା ଏବଂ ଫଳମୂଳ ଖାଇପିଇ ରହିବେ। ପୂର୍ବରୁ ପୋଡ଼ପିଠା ପ୍ରସ୍ତୁତ ହୋଇ ରହିଥାଏ। ରଜପାଇଁ ମୁଢ଼ୀ ଭଜା

ହୋଇ ରଖାଯାଇଥାଏ । ଯେତିକି ଖିଆଯାଏ ସେତିକି ବଣ୍ଟାଯାଏ । ଖାଇବା ଆଉ ବାଣ୍ଟିବାରେ ଯେତିକି ଆନନ୍ଦ, ଗାଇବା ଆଉ ଖେଳିବାରେ ବି ସେତିକି ଆନନ୍ଦ । ନୂଆଲୁଗା ପିନ୍ଧି ଦୋଳି ଖେଳରେ ମାତିବାର ପୁଣି ତା' ଠାରୁ ଅଧିକ ଆନନ୍ଦ ।

ରଜର ତିନିଦିନ ଓଡ଼ିଶାର ଝିଅମାନେ ଭଲଭାବରେ ସଜବାଜ ହୁଅନ୍ତି । ମା' ମାନେ ଝିଅମାନଙ୍କୁ ସଜ କରିବାର ଦାୟିତ୍ୱ ନିଅନ୍ତି । ନୂଆଲୁଗା ପିନ୍ଧି ବିଭିନ୍ନ ସ୍ଥାନକୁ ବୁଲିବାକୁ ଯାଆନ୍ତି । ଆଉ ଦୋଳି ବାନ୍ଧି "ବନସ୍ତେ ଡାକିଲା ଗଜ, ବରଷକେ ଥରେ ଆସିଚ୍ଛି ରଜ" ଗୀତ ଗାଇ ଆନନ୍ଦରେ ଖେଳ ଖେଳିଥା'ନ୍ତି । ଏହି ତିନି ଦିନ ରନ୍ଧାବଡ଼ା ଓ କଟାବଟା ଇତ୍ୟାଦି ଘରକାମ ନକରି ସଂପୂର୍ଣ୍ଣ ଆନନ୍ଦ ଉପଭୋଗ କରନ୍ତି ।

ବର୍ତ୍ତମାନ ଦେଖାଯାଉଚ୍ଛି ଯେ, ଗାଁ ଗହଳିରେ ଏହାର ପରମ୍ପରା କିଛିଟା ଥିଲେ ମଧ୍ୟ ଆଧୁନିକ ସଭ୍ୟତାର ଛାପରେ ଏହା କ୍ରମଶଃ ପାରମ୍ପରିକତାକୁ ହରାଇ ବସୁଚ୍ଛି । କିନ୍ତୁ ରଜ ପର୍ବରେ କେତେ ମଉଜ ସେ କଥା ଯିଏ ଅଂଗେ ନିଭେଇଚ୍ଛି ସେ କେବଳ ଜାଣିଚ୍ଛି ।

## शब्दार्थ

| **ओड़िआ शब्द** | **हिंदी अर्थ** |
|---|---|
| ରଜପର୍ବ | (रजपर्व) ओड़िशा का एक प्रशिद्ध पर्व |
| ପ୍ରାଚୀନ ଐତିହ୍ୟ | प्राचीन ऐतिह्य |
| ପୁରାତନ ସଂସ୍କୃତି | पुरातन संस्कृति |
| ବାରମାସରେ ତେରପର୍ବ | बारह महीने में तेरह पर्व (वर्ष में बहुत पर्व) |
| ଓଷାବ୍ରତ | उषाव्रत |
| ଆଉ କେତେ | और कितना |
| ପର୍ବ ପର୍ବାଣୀ | पर्व पर्वाणि |
| ପୂଜାବିଧୀ | पूजा की नीति |
| ମଉଜ | आनंद |
| ମଜଲିସ | मजलिस् |
| ଏ ମୁଣ୍ଡରୁ ସେ ମୁଣ୍ଡ ଯାଏଁ | इस् तरफ् से उस् तरफ |
| ଜାକଜକମରେ | बहुत आड़ंबर पूर्ण |
| ପାଳିତ ହୋଇଥାଏ | पालन होता है |
| ଓଡ଼ିଶାର ମୁଖ୍ୟ ପର୍ବ | ओड़िशा का प्रधान पर्व |

| | |
|---|---|
| ଆଷାଢ଼ମାସ | आषाढ़ की महीना |
| ପୂର୍ବଦିନ | पहला दिन |
| ପହିଲି ରଜ | रज पर्व का पहला दिन |
| ଭୂମି ଦହନ | भूमि खोदना |
| ଖୋଳାଖୋଳି କରିବା | खोदन करना |
| ବସୁମତୀ ସ୍ନାନ | बसुमती स्नान |
| ଏକ ପ୍ରଜନନ ଶକ୍ତି | पैदा करने की शक्ति |
| ଜାଗ୍ରତ | जाग्रत |
| ଧରଣୀ ରାଣୀ | धरणी राणी |
| ରଜସ୍ୱଳା ସ୍ତ୍ରୀ | रजवती स्त्री |
| ଭୂଇଁରେ ଚଲାବୁଲା | भुमिमें चलना बुलना |
| ସ୍ନାନ କରିବା ନିଃଷେଧ | स्नान करना मना है |
| ଅଭିଳାଷ ପୋଷଣ | इच्छा प्रकाश |
| ପଦସ୍ପର୍ଶ ନ କରିବାପାଇଁ | पैर स्पर्श न करने के लिए |
| ଗୁଆଖୋଳ | सुपारी पेड़ का आवरण |
| କଦଳୀ ବାସୁଙ୍ଗା | केला पेड़ का आवरण |
| ପରମ୍ପରା | परंपरा |
| ସଂକ୍ରାନ୍ତି | संक्रांति |
| ଦାୟିତ୍ୱ ନେଇଥାଆନ୍ତି | दाइत्व लेना |
| ବୁଲିବାକୁ ଯାଆନ୍ତି | धूमने के लिए |
| ଆଧୁନିକ ସଭ୍ୟତା | आधुनिक सभ्यता |
| ଆଗାମୀ ପିଢ଼ୀ | आनेवाला पीढ़ी |

## अभ्यास
## ଅଭ୍ୟାସ

I. ଅନୁଛେଦର ଆଧାର ଉପରେ ନିମ୍ନରେ ଦିଆଯାଇଥିବା ପ୍ରଶ୍ନର ଉତ୍ତର ଦିଅନ୍ତୁ।
(अनुच्छेद के आधार पर नीचे दिए गए प्रश्नों के उत्तर दीजिए ।)

1. କାହାର ପ୍ରାଚୀନ ଐତିହ୍ୟ ଆଉ ପୁରାତନ ସଂସ୍କୃତି ବି ଅଛି ?

2. କେତେ ଦିନ ଧରି ରଜପର୍ବ ପାଳିତ ହୋଇଥାଏ ?
3. କେଉଁଦିନ ବସୁମତୀ ସ୍ନାନ ଏବଂ ରଜପାଳନ ଶେଷ କରାଯାଇଥାଏ ?
4. କେଉଁମାନଙ୍କ ପାଇଁ ତିନିଦିନ ଯାଏଁ ସ୍ନାନ କରିବା ଏବଂ ଭୂମିରେ ଚଲାବୁଲା କରିବା ପାଇଁ ନିଷେଧ କରାଯାଇଛି ?
5. ରଜପର୍ବର ମୁଖ୍ୟ ପିଠା କ'ଣ ?
6. କେଉଁମାନେ କୁମାରୀମାନଙ୍କୁ ସଜାଇବା ଦାୟିତ୍ୱ ନେଇଥାଆନ୍ତି ?
7. କୁମାରୀ କନ୍ୟାମାନେ ଭୂମିରେ ପଦସ୍ପର୍ଶ ନ କରିବା ପାଇଁ କ'ଣ କ'ଣ ପିନ୍ଧିଥା'ନ୍ତି ?
8. ରଜରେ ଝିଅମାନେ କେଉଁଥିରେ ଖେଳନ୍ତି ?

II. ପ୍ରତ୍ୟେକ ଶବ୍ଦ ଗୁଡିକୁ ଠିକ୍ କ୍ରମରେ ସଜାଇ ବାକ୍ୟ ଗଠନ କରନ୍ତୁ ।
(प्रत्येक शब्द समुह में दिए गए शब्दों को सहि क्रम में रखकर वाक्य बनाइए।)

1. ଯାତ୍ରା, ଓଡ଼ିଶାରେ, ବାର, ତେର, ମାସରେ
2. ଏହି ପର୍ବ, ନିର୍ବିଶେଷରେ ଉଚ୍ଚନୀଚ, ଜାତିଭେଦ, କରାଯାଇଥାଏ, ଓ ସହର ପଲ୍ଲୀରେ, ଚାରିଆଡ଼େ ପାଳିତ, ସମସ୍ତଙ୍କ ଘରେ
3. ଗାଇବା ଆଉ ବାଣ୍ଟିବାରେ, ବି ସେତିକି ଆନନ୍ଦ, ଖାଇବା, ଯେତିକି ଆନନ୍ଦ, ଆଉ ଖେଳିବାରେ
4. ସଂପୂର୍ଣ୍ଣ, ଉପଭୋଗ କରନ୍ତି, ଏହି ତିନିଦିନ, ଆନନ୍ଦ, ରନ୍ଧାବଢ଼ା ଓ କଟାବଟା, ଇତ୍ୟାଦି ଘରକାମ ନକରି
5. ପାରମ୍ପରିକତାକୁ, ଏହାର ପରମ୍ପରା, ଏହା କ୍ରମଶଃ, ଗାଁ ଗହଳିରେ, ବର୍ତ୍ତମାନ ଦେଖାଯାଉଛି ଯେ, ଆଧୁନିକ ସଭ୍ୟତାର ଛାପରେ, କିଛିଟା ଥିଲେ ମଧ୍ୟ, ହରାଇ ବସୁଛି

III. ନିମ୍ନ ଅନୁଚ୍ଛେଦକୁ ହିନ୍ଦୀରେ ଅନୁବାଦ କରନ୍ତୁ ।
(हिंदी में अनुवाद कीजिए।)

ପାରମ୍ପରିକ ବିବାହରେ ଯୌତୁକ ପ୍ରଥା ଚଳି ଆସୁଛି । ଝିଅ ଘର, ପୁଅଘରର ଦାବି ପୂରଣ କରିବାକୁ ଯାହା ଦିଅନ୍ତି ତାହା ଯୌତୁକ । ଆଗେ ଘଣ୍ଟା, ଚେନ୍, ସାଇକେଲ୍ ପୁଅ ଘରର ଦାବି ଥିଲା । ଆଉ ଏବେ ସ୍କୁଟର, ମଟର ସାଇକେଲ୍, ଟେଲିଭିଜନ୍, ଦାବି ହେଲାଣି । ଧୀରେ ଧୀରେ ଏହା ବଢ଼ିବାରେ ଲାଗିଛି । ଦାବି ପୂରଣ କରି ନପାରିଲେ ଶାଶୁ ଘରେ ଝିଅ ପ୍ରତି ଅତ୍ୟାଚାର କରାଯାଉଛି । ଶାଶୁ, ଶ୍ୱଶୁର, ସ୍ୱାମୀ ଓ ଦିଅର ମିଶି କେଉଁଠି ଝିଅକୁ ପୋଡ଼ିଲେଣି ତ କେଉଁଠି ଗଳାଚିପି ମାରିଲେଣି ।

ଆଜିକାଲି ଯୌତୁକ ବିରୋଧୀ ଆଇନ ହେଲାଣି । ଏଥିରେ ଯୌତୁକ ଦେଉଥିବା ଓ ନେଉଥିବା ଉଭୟ ପକ୍ଷକୁ ଦଣ୍ଡଦେବାର ବ୍ୟବସ୍ଥା ଅଛି । କିନ୍ତୁ ଆଇନରେ ଫାଙ୍କ ଥିବାରୁ ଅନେକ

ମୁକୁଳି ଆସୁଛନ୍ତି । ପୁଣି ଯୌତୁକ ଦିଆ ନିଆ ଚାଲିଛି ।

ବିଭିନ୍ନ ସମାଜରେ, ବିଶେଷ କରି ଆଦିବାସୀ ସମାଜରେ କନ୍ୟାସୁନା ଦେବାର ବ୍ୟବସ୍ଥା ଅଛି । ଏହା ପାରମ୍ପରିକ ଯୌତୁକର ଓଲଟା ପିଠି । ବରଘର ନାନାପ୍ରକାର ଉପହାର ନେଇ କନ୍ୟାଘରକୁ ଝିଅ ମାଗିବାକୁ ଯାଆନ୍ତି । ଯଦି କୌଣସି କାରଣରୁ ଝିଅଘର ବାହାଘର ପାଇଁ ରାଜି ନହୁଅନ୍ତି ତେବେ ପୁଅ ଜୋର କରି ଝିଅକୁ ଉଠେଇ ମଧ୍ୟ ନେଇଯାଇପାରେ । ତା'ପରେ ଯେଉଁ ବାହାଘର ହୁଏ ତାକୁ 'ଉଦୁଲିଆ' ବାହାଘର କୁହାଯାଏ । ଯୌତୁକ ଆମ ସମାଜର ଅଭିଶାପ । ଏହା ପରିବାର ତ ଭାଙ୍ଗେ, ଆଉ ସମାଜରେ ମଧ୍ୟ ବିଶୃଙ୍ଖଳା ସୃଷ୍ଟି କରେ । ବହୁ ଯୁବକ ଯୁବତୀଙ୍କ ଜୀବନ ନଷ୍ଟ ହୁଏ ।

IV. ଓଡ଼ିଆରେ ଅନୁବାଦ କରନ୍ତୁ ।
(ओड़िआ में अनुवाद कीजिए।)

यह देखो, शादी का मंडप सजा हुआ है। आप देखकर खुश होंगे। मंडप के चारों ओर केले के पेड़ लगे हुए हैं। विविध प्रकार के कागज़ के फूल झूल रहे हैं। मंडप के ऊपर वर-वधु की शादी संपन्न हो रही है। वे दोनों कितने खुश लग रहे हैं ! इस पवित्र कार्य में बाधा नहीं डालना। दहेज मत ग्रहण करना और शांति से जीवन बिताना। हमारे देश में दहेज एक असाध्य रोग की तरह फैला हुआ है। इस के कारण बहुत सी लड़कियाँ उचित समय पर विवाह नहीं कर पातीं। देर से विवाह करने के कारण पति-पत्नी के आपसी संबंध भी ठीक-ठीक नहीं बन पाते। आने वाली संतान पर भी पति-पत्नी के कटु संबंध कुप्रभाव डालता है।

V. ନିଜ ପରିବାରରେ ପାଳନ କରୁଥିବା କୌଣସି ଏକ ଉତ୍ସବ କିମ୍ବା ରାଜ୍ୟ ସ୍ତରରେ, ବା ଜାତୀୟ ସ୍ତରରେ କୌଣସି ଏକ ଉତ୍ସବ ଉପରେ ଗୋଟିଏ ଛୋଟ ପରିଚ୍ଛେଦ ଲେଖନ୍ତୁ ।
(अपने परीवार या राज्य या देश में मनाएवाले उत्सव के बारे में एक अनुच्छेद लिखिए।)

## टिप्पणियाँ

I. इस पाठ में निम्न प्रकार के वाक्यों का प्रयोग हुआ है।

1) 1. ଆପଣ ମତେ କ'ଣ ସାହାଯ୍ୟ କରିବେନି ? — क्या आप मेरी मदद नहीं करेगें?
आपण मते क'ण साहाज्य करिबेनि ?

2. ଯେକୌଣସିମତେ ମଂଜୁରୀ କରିବାକୁ ପଡ଼ିବ । — जैसे भी हो, मंजूरी करना पड़ेगा।
जेकौणसिमते मंजुरी करिबाकु पड़िब।

2) 1. ତାକୁ ତ ବହୁତ ଖୁସି ଲାଗିବ । — उसको बहुत खुशी लगेगी।
ताकु त वहुत खुसि लागिब।

3) 1. ସେ କାମ ସେ କରିନେବ। — यह काम वह कर लेगी।

से काम से <u>करिनेब।</u>

2. ପିଲାଲୋକ କେତେବେଳେ ଯେ କ'ଣ କରିବସିବ। — बच्चा है, कब क्या कर बैठेगा?

पिलालोक केतेबेळे जे क'ण <u>करिबसिब।</u>

3. ଆପଣ କ'ଣ ଏକୁଟିଆ ସବୁକାମ ଏକା ଏକା କରିପକେଇବେ? — क्या आप अकेले ही सब काम कर ड़ालेंगे?

आपण क'ण एकुटिआ सबुकाम एका एका <u>करिपकेइबे</u> ?

उपर्युक्त वाक्य (1) और (2) के वाक्यों की रेखांकित क्रियारूप 'ସାହାଯ୍ୟ କରିବ' (साहाज्य करिब), सहायता करना, 'ମଞ୍ଜୁରୀ କରିବା' (मंजूरी करिबा), मंजूर करना 'ଖୁସି ଲାଗିବ' (खुसी लागिब) 'खुश होना' आदि हिंदी के समान मिश्र क्रियाएँ हैं। (3) के वाक्यों के रेखांकित क्रियारूप 'କରିନେବ' (करिनेब), 'कर लेना', 'କରିବସିବ' (करिबसिब), 'कर बैठना' 'କରିପକେଇବେ' (करिपकेइबे) 'कर डालना' क्रियाओं के समान संयुक्त क्रियाएँ हैं।

ओड़िआ में मिश्र क्रियाएँ निम्न प्रकारों से बनती हैं। :-

1) संज्ञा + क्रिया = मिश्र क्रिया

ସାହାଯ୍ୟ + କରିବା = ସାହାଯ୍ୟକରିବା — 'मदद करना'

साहाज्य + करिबा = साहाज्य करिबा

2) विशेषण + क्रिया = मिश्र क्रिया

ଭଲ + ଲାଗିବ = ଭଲଲାଗିବ — अच्छा लगना

भल + लागिब = भललागिब

ଖରାପ + ଲାଗିବ = ଖରାପଲାଗିବ — बुरा लगना

खराप + लागिब = खरापलागिब

ओड़िआ में संयुक्त क्रिया बनाने के लिए मूल क्रिया के साथ '-ଇ' (-इ) प्रत्यय जोड़कर उसके साथ अलग-अलग सहायक क्रियाएँ जोड़ी जाती हैं। हिंदी की तरह ले, दे जैसी क्रियाएँ जोड़ने से मूल क्रिया के अर्थ में 'अचानकता', 'अवधारण' 'निश्चय', नम्रता 'उग्रता' आदि अर्थों का बोध होता है।

जैसे :- मूल क्रिया + प्रत्यय + सहायक क्रिया

-କର୍ +-ଇ > କରି + ଦେବା = କରିଦେବା — कर देना

-कर् + -इ > करि + देबा = करिदेबा

| | | |
|---|---|---|
| | କରି + ନେବା = କରିନେବା | कर लेना |
| | करि + नेबा = करिनेबा | |
| | କରି + ବସିବା = କରିବସିବା | कर बैठना |
| | करि + बसिबा = करिबसिबा | |
| | କରି + ପକେଇବା = କରିପକେଇବା | कर पकाना |
| | करि + पकेइबा = करिपकेइबा | |
| -ଖା +-ଇ > | ଖାଇ + ଦେବା = ଖାଇଦେବା | खा देना |
| -खा +-इ > | खाइ + देबा = खाइदेबा | |
| | ଖାଇ + ନେବା = ଖାଇନେବା | खा लेना |
| | खाइ + नेबा = खाइनेबा | |
| | ଖାଇ + ବସିବା = ଖାଇବସିବା | खा बैठना |
| | खाइ + बसिबा = खाइबसिबा | |
| | ଖାଇ + ପକେଇବା = ଖାଇପକେଇବା | खा डालना |
| | खाइ + पकेइबा = खाइपकेइबा | |

ध्यान दीजिए कि ओड़िआ की तरह हिंदी में मुख्य क्रिया में कोई प्रत्यय नहीं जोड़ा जाता।

जैसे :- कर् + लेना = कर लेना
देख् + लेना = देख लेना

ध्यान दें कि इस पाठ में ओड़िआ के संयुक्त वाक्यों का भी परिचय दिया गया है।

**संयुक्त वाक्य**

| | | |
|---|---|---|
| 1. | ବାହାଘର ତ କେବଳ ଗୋଟିଏ ମାସ ରହିଲା ଆଉ ମୋତେ କିଛି କାମ ଦେଲେ ନାହିଁ।<br>बाहाघर त केबळ गोटिए मास रहिला आउ मोते किछि काम देले नाहिं। | शादी के तो केवल एक ही महीना रह गया है और मुझे कुछ काम नहीं दिया। |
| 2. | କ'ଣ ପିଲାମାନେ କେବଳ ମାଛରେ ରାଜି ହେବେ କିମ୍ବା କୁକୁଡ଼ା କିଣିବାକୁ କହିବେ ? | क्या बच्चे केवल मछली से ही राज़ी होंगे या मुर्गे खरीदने केलिए बोलेंगे ? |

पिलामाने क'ण केबळ माछरे राजि
हेबे किंबा कुकुड़ा किणिबाकु कहिबे?

3. ଆପଣ କ'ଣ ଉପର ଅଫିସରଙ୍କୁ ଦରଖାସ୍ତ କରିଛନ୍ତି କିମ୍ବା ଏବେ ଦେବାକୁ ହେବ।
आपण क'ण उपर अफिसरंकु दरखास्त करिछन्ति किंबा एबे देबाकु हेब।
क्या आपने बड़े अफसर को दरखास्त दिया है या अभी देना है।

4. ଆରେ ଭାଇ ରାଗନାହିଁ ଆଉ ଖରାପ ଭାବ ନାହିଁ।
आरे भाइ रागनाहिं आउ खराप भाब नाहिं।
अरे भाई! गुस्सा मत करो और बुरा मत समझो।

उपर्युक्त वाक्यों से मालूम होता है कि ओड़िआ भाषा में संयुक्त वाक्यों का निर्माण केलिए समुच्चय बोधक अव्यय 'ଆଉ' (आउ) 'और' तथा वैकल्पिक अव्यय 'କିମ୍ବା' (किंबा), 'ଯା' (या) का प्रयोग होता है।

# ପାଠ 23
# पाठ

## ରବିବାବୁଙ୍କ ସଂସାର
## रबिबाबुकं संसार

## रवि बाबु का संसार

ଆନନ୍ଦ : କ'ଣ ରବିବାବୁ ! ଖବର କ'ଣ? ବହୁତ ବ୍ୟସ୍ତ ଲାଗୁଛନ୍ତି ।

ରବି : ଏଇ ଗୋପୀ ବିଷୟରେ ହିଁ ଭାବୁଥିଲି । ଚାରି ବର୍ଷ ହେଲା ବି.ଏ ପାସ୍ କରି ଘରେ ବସିଛି । ଦରଦାମ ଯାହା ହେଲାଣି ଏକା ଏକା କୁଟୁମ୍ବ ଚଳେଇ ହେବ ନାହିଁ ।

ଆନନ୍ଦ : ହଁ ତା' ତ ସତ । ଗୋପୀ ଯଦି ଘରକୁ କିଛିଟା ସାହାଯ୍ୟ କରନ୍ତା, ତେବେ ଭଲ ହୁଅନ୍ତା ।

ରବି : ତା' ପାଇଁ ଘରେ ସମସ୍ତଙ୍କ ମନ ଖରାପ ।

ଆନନ୍ଦ : ତେବେ ଗୋପୀ ପାଇଁ କିଛି ଚିନ୍ତା କରାଯିବା ଉଚିତ । ଗତ ମାସ 'ରୋଜଗାର ସମାଚାର' ରେ ଗୋଟେ ବିଜ୍ଞାପନ ବାହାରିଥିଲା । ବର୍ତ୍ତମାନ ତା' ପାଇଁ ଫର୍ମ ପୂରଣ କରିବା ।

आनंद : रवि बाबु, क्या हाल-चाल है? बहुत परेशान लग रहे हैं।

रवि : यही, गोपी के बारे में ही सोच रहा था। चार साल हो गए बी.ए. पास करके घर में बैठा है। महँगाई इतनी बढ़ गई है कि अकेले कुटुंब चलाया नहीं जाएगा।

आनंद : हाँ, वह तो सच है। गोपी यदि घर की कुछ मदद करता, तो अच्छा होता।

रवि : इसीलिए घर में सब का मन खराब है।

आनंद : तब गोपी के लिए कुछ सोचना चाहिए। पिछले महीने 'रोज़गार समाचार' में एक विज्ञापन निकला था। अब उसके लिए फर्म भरेंगे। देखते हैं कि क्या होता है।

| | | | |
|---|---|---|---|
| | ଦେଖାଯାଉ କ'ଣ ହେଉଛି ? | | |
| ରବି | : ନାଇଁ ଭାଇ, ତା' ଦ୍ୱାରା କିଛି ହେବନି । | रवी | : नहीं भाई, उसके द्वारा कुछ नहीं होगा। |
| ଆନନ୍ଦ | : ହଉ ଦେଖିବା । ସେକଥା ପରେ ବିଚାର କରାଯିବ । ଭାଉଜ କ'ଣ ଘରେ ନାହାନ୍ତି କି ? | आनंद | : अच्छा देखेंगे, उसके बारे में बाद में सोचा जाएगा। क्या भाभी घर पर नहीं है? |
| ରବି | : ସେ ପରା ଉତ୍କଳ ମହିଳା ସମିତିର ସମ୍ପାଦିକା । ଆଜି ଶିଶୁ ମନ୍ଦିରରେ ପୁରସ୍କାର ବିତରଣୀ ସଭାକୁ ମୁଖ୍ୟ ଅତିଥି ହୋଇ ଯାଇଛନ୍ତି । | रवि | : वह तो उत्कल महिला-समिति की सेक्ट्री (संपादिका) है। आज शिशु मंदिर में पुरस्कार-वितरण समारोह (सभा) की मुख्य अतिथि होकर गई हैं। |
| ଆନନ୍ଦ | : ଆଚ୍ଛା,ସେଠି କ'ଣ କ'ଣ ସବୁ ହେବ ? | आनंद | : अच्छा। वहाँ क्या-क्या होगें? |
| ରବି | : ପିଲାମାନଙ୍କ ଦ୍ୱାରା ଖେଳ ପ୍ରତିଯୋଗିତା କରାହେବ । ସେମାନଙ୍କ ଦ୍ୱାରା ନାଚ, ଗୀତ ବି କରାଯିବ । | रवि | : बच्चों से खेल प्रतियोगिता कराई जाएगी। उन (लोगो) के द्वारा नाच-गाना भी कराया जाएगा। |
| ଆନନ୍ଦ | : ଭାଉଜ କ'ଣ ସେଠି ଭାଷଣ ଦେବେ ? | आनंद | : क्या भाभी वहाँ भाषण देंगी ? |
| ରବି | : ହଁ, ଭାଷଣତ ଦେବେ । ପିଲାମାନଙ୍କୁ ବି ତାଙ୍କଦ୍ୱାରା ପୁରସ୍କାର ଦିଆଯିବ । ଆଜି ସକାଳେ ମନ୍ତ୍ରୀଙ୍କ ଦ୍ୱାରା ନୂଆ ସ୍କୁଲଘର ଉଦ୍‌ଘାଟନ କରାଗଲା । | रवि | : हाँ, भाषण तो देंगी। बच्चों को उनके द्वारा पुरस्कार भी दिलाया जाएगा। आज सवेरे मंत्री जी के द्वारा स्कूल की नई इमारत का उद्‌घाटन कराया गया। |
| ଆନନ୍ଦ | : ଆପଣଙ୍କ ବଡ଼ ଝିଅ କାହିଁ ଦେଖାଯାଉନିତ ? | आनंद | : आपकी बड़ी लड़की कहीं दिखाई नहीं पड़ती। |
| ରବି | : ସିଲେଇ ଶିଖିବାକୁ ଯାଇଛି । ତା' ଦ୍ୱାରା ପାଠଶାଠ କିଛି ହେବନି । | रवि | : सिलाई सीखने (के लिए) गई है। उस से पढ़ाई-लिखाई (कुछ) नहीं |

| | | | |
|---|---|---|---|
| | ବି.ଏ ଟା ପାଶ୍ କଲେ ବାହା କରି ଦେବି ବୋଲି ଭାବୁଛି । ହେଲେ ଯୌତୁକ ସମସ୍ୟା ଯାହା ହେଲାଣି ନା, ଏ ଯୁଗରେ ବାହାଘରଟେ କରେଇବା କାଠିକର ପାଠ । | | होती। सोच रहा हूँ कि बि.ए. पास करले तो ब्याह करा दूँगा। लेकिन दहेज की समस्या ऐसी हो गई है कि अब शादी कराना बड़ा दुष्कर हो गया है। |
| ଆନନ୍ଦ | : ହଁ ଭାଇ, ସତକଥା ଏଇ ବେକାରୀ ସମସ୍ୟା, ଯୌତୁକ ସମସ୍ୟା ଏଇ ସବୁ ଆମ ସମାଜରୁ କେବେ ଦୂର ହେବ ? ମୁଁ ଭାବୁଛି ଲୋକଙ୍କ ଦ୍ୱାରା ହିଁ ଏସବୁ ଦୂର କରାଯାଇ ପାରିବ । | आनंद | : हाँ भाई, सच है। यह बेकारी की समस्या, (यह) दहेज की समस्या ये सब हमारे समाज से कब दूर होंगी? मेरा विचार है कि लोगों के द्वारा ही यह सब दूर कराया जा सकता है। |
| ରବି | : ନାଇଁ ଭାଇ, ମୁଁ ତ ଭାବୁଛି ସରକାରଙ୍କ ଦ୍ୱାରା ଆଇନ କରାଯିବା ଉଚିତ । ତେବେ ଯାଇ ଏସବୁ ସମସ୍ୟାର ସମାଧାନ ହୋଇପାରିବ । | रवि | : नहीं भाई ! मैं तो सोच रहा हूँ कि सरकार के द्वारा कानून बनाया जाना चाहिए। तभी तो इस समस्या का समाधान हो सकेगा। |
| ଆନନ୍ଦ | : ଆପଣଙ୍କ ଦିଲ୍ଲୀ ଯିବାର ଥିଲା କ'ଣ ହେଲା ? | आनंद | : आपको दिल्ली जाना था। उसका क्या हुआ? |
| ରବି | : ମୁଁ ସେଠାକୁ ଯିବାର ବିଚାର ଛାଡ଼ିଦେଲି । ସେଠାରେ ଭୀଷଣ ଗରମରେ କେଉଁଆଡ଼େ ଯାଇପାରିବିନି । ସେଠାରେ ମୋର ଜଣେ ସାଙ୍ଗ ଅଛନ୍ତି । ତା ଦ୍ୱାରା କାମ କରେଇନେବି । | रवि | : मैं ने वहाँ जाने का विचार छोड़ दिया। वहाँ की भीषण गरमी में कहीं नहीं जा पाऊँगा। वहाँ मेरा एक मित्र है। उसी से अपना काम करवाऊँगा। |
| ଆନନ୍ଦ | : ଆଚ୍ଛା, ଏବେ ଚାଲନ୍ତୁ ଯିବା, ନମସ୍କାର । | आनंद | : अच्छा जी, तो अब चलते हैं, नमस्कार। |
| ରବି | : ନମସ୍କାର ଆଜ୍ଞା । | रवि | : नमस्कार जी। |

## शब्दार्थ

| ओड़िआ शब्द | हिंदी अर्थ |
|---|---|
| ଖବର | खबर, हाल-चाल |
| କୁଟୁମ୍ବ | कुटुंब |
| ରୋଜଗାର | रोज़गार |
| ସମାଚାର | समाचार |
| ବିଜ୍ଞାପନ | विज्ञापन |
| ପୂରଣ କରିବା | पूर्ण करना |
| ପୁରସ୍କାର | पुरस्कार |
| ଖେଳ | खेल |
| ପ୍ରତିଯୋଗିତା | प्रतियोगिता |
| ଉଦ୍‌ଘାଟନ | उद्‌घाटन |
| ସିଲେଇ | सिलाई |
| ବେକାର ସମସ୍ୟା | बेकारी की समस्या |
| ଯୌତୁକ | दहेज |
| ସମାଧାନ | समाधान |

### ଅଭ୍ୟାସ
### अभ्यास

I. ନିମ୍ନରେ ଦିଆଯାଇଥିବା ବାକ୍ୟ ଗୁଡ଼ିକୁ ଅଭ୍ୟାସ କରନ୍ତୁ।
(नीचे दिए गए वाक्य दोहराइए।)

1. ଏଇ ଗୋପୀ କଥା ହିଁ ଭାବୁଥିଲି।
2. ନାଇଁ ଭାଇ, ତା' ଦ୍ୱାରା କିଛି ହେବନି।
3. ଗୋପୀ ପାଇଁ କିଛି ଚିନ୍ତା କରାଯିବା ଉଚିତ।
4. ତା ଦ୍ୱାରା ପାଠ ଶାଠ କିଛି ହେବନି।
5. ଲୋକଙ୍କ ଦ୍ୱାରା ହିଁ ଏସବୁ ଦୂର କରାଯାଇପାରିବ।

6. ନାଇଁ ଭାଇ, ମୁଁ ତ ଭାବୁଛି ସରକାରଙ୍କ ଦ୍ୱାରା ଆଇନ୍ କରାଯିବା ଉଚିତ୍ ।
7. ପିଲାମାନଙ୍କର ଖେଳ ପ୍ରତିଯୋଗିତା କରାହେବ ।
8. ସେମାନଙ୍କ ଦ୍ୱାରା ବି ନାଚ ଗୀତ କରାଯିବ ।
9. ତାଙ୍କ ଦ୍ୱାରା ପିଲାମାନଙ୍କୁ ବି ପୁରସ୍କାର ଦିଆଯିବ ।
10. ଆଜି ସକାଳେ ମନ୍ତ୍ରୀଙ୍କ ଦ୍ୱାରା ନୂଆ ସ୍କୁଲ ଘର ଉଦ୍‌ଘାଟନ କରାଗଲା ।
11. ତା' ଦ୍ୱାରା କାମ କରେଇନେବି ।
12. କାହାଦ୍ୱାରା ଏ ମନ୍ଦିର ଗଢ଼ାଯାଇଛି ।
13. ଆଜି ଶିଶୁ ମନ୍ଦିରରେ ପୁରସ୍କାର ବିତରଣୀ ସଭାକୁ ମୁଖ୍ୟ ଅତିଥି ହୋଇଯାଇଛନ୍ତି ।
14. ବି.ଏ. ଟା ପାସ୍ କରିଦେଲେ ବାହା କରିଦେବି ବୋଲି ଭାବୁଛି ।
15. ମୁଁ ସେଠାକୁ ଯିବାର ବିଚାର ଛାଡ଼ିଦେଲି ।

II. ରେଖାଙ୍କିତ ଶବ୍ଦ ସ୍ଥାନରେ ଦିଆ ଯାଇଥିବା ଶବ୍ଦ ଗୁଡ଼ିକୁ ପ୍ରୟୋଗ କରି ବାକ୍ୟ ଗଠନ କରନ୍ତୁ ।
**(वाक्यों में रेखांकित शव्दों के स्थान पर दिए गए शव्दों का प्रयोग कर वाक्य बनाइए।)**

1. ପିଲାମାନଙ୍କର ଖେଳ ପ୍ରତିଯୋଗିତା କରାହେବ ।
   ଆମମାନଙ୍କର
   ସେମାନଙ୍କର
   ଛାତ୍ରମାନଙ୍କର
   ଖେଳାଳୀମାନଙ୍କର
   ଜିଲ୍ଲାମାନଙ୍କର
2. ଦେବେନ୍ଦ୍ରଙ୍କ ଦ୍ୱାରା ଗୋଟିଏ ଉପନ୍ୟାସ ଲେଖାଗଲା ।
   କାହାଣୀ
   କ୍ଷୁଦ୍ରଗଳ୍ପ
   କବିତା
   ପ୍ରବନ୍ଧ
   ବହି
   ନାଟକ
3. ମୋ ଦ୍ୱାରା ଗୋଟିଏ ଶାଢ଼ୀ କିଣାହେବ ।
   ଫ୍ରକ୍
4. ରାମଦ୍ୱାରା ପାଠ ପଢ଼ାହେବ ।
   ଲେଖାହେବ

| | |
|---|---|
| ଚୁଡ଼ିଦାର କମିଜ | ଶୁଣାହେବ |
| ସାର୍ଟ | ଦିଆହେବ |
| ବ୍ଲାଉଜ୍ | ନେବାହେବ |
| ଘାଗରା | ଦେଖାହେବ |

5. ସେମାନଙ୍କ ଦ୍ୱାରା ନାଚଗୀତ କରାଯିବ ।

ଆମମାନଙ୍କ
ଆପଣମାନଙ୍କ
ପିଲାମାନଙ୍କ
କଳାକାରମାନଙ୍କ
ଶିଳ୍ପୀମାନଙ୍କ

6. ରାଧାନାଥଙ୍କ ଦ୍ୱାରା କବିତା ପାଠ କରାଯିବ ।

କବିତା ଲେଖାଯିବ ।
ଗଳ୍ପ ପାଠ କରାଯିବ ।
ପୁରସ୍କାର ଦିଆଯିବ ।
ଜିନିଷ ପଠାଯିବ ।
ପାଠ ପଢ଼ାଯିବ ।

III. ବନ୍ଧନୀ ମଧ୍ୟରୁ ଉପଯୁକ୍ତ ଶବ୍ଦ ଗୁଡ଼ିକୁ ବାଛି ବାକ୍ୟ ଗଠନ କରନ୍ତୁ ।
(कोष्ठक में दिए गए शब्दों में से उपयुक्त शव्द चुनकर वाक्य पूरे किजिए।)

1. ମନ୍ତ୍ରୀଙ୍କ ଦ୍ୱାରା ପୋଲ ଉଦ୍‌ଘାଟନ _____ । (କରିଲେ, କରାଗଲା)
2. ପିଲାଙ୍କ ଦ୍ୱାରା ଜାତୀୟ ସଂଗୀତ _____ । (ବୋଲିଲେ, ବୋଲାଗଲା)
3. ନାଟ୍ୟକାରଙ୍କ ଦ୍ୱାରା ନାଟକ _____ । (ଲେଖିଲେ, ଲେଖାଗଲା)
4. ଶିଳ୍ପୀମାନଙ୍କ ଦ୍ୱାରା ମୂର୍ତ୍ତି ___ । (ଗଢ଼ିଲେ, ଗଢ଼ାଗଲା)
5. ସାମ୍ବାଦିକଙ୍କ ଦ୍ୱାରା ବିଜ୍ଞାପନ _____ । (ଦେଲେ, ଦିଆଗଲା)

IV. ବନ୍ଧନୀ ମଧ୍ୟରେ ଦିଆଯାଇଥିବା କ୍ରିୟା ଗୁଡ଼ିକର ଉପଯୁକ୍ତ ରୂପ ପ୍ରୟୋଗ କରି ବାକ୍ୟ ଗଠନ କରନ୍ତୁ ।
(कोष्ठक में दी गई क्रियाओं के उपयुक्त रूपों का प्रयोग कर वाक्य पूरे किजिए)

1. କାଲି ପିଲାମାନଙ୍କ ଦ୍ୱାରା ଖେଳ _____ । (ଖେଳ୍, ଯା)

2. ଏବେ ଲେଖକମାନଙ୍କ ଦ୍ୱାରା ଗଳ୍ପ _____ । (ଲେଖ୍, ଯା)

3. ସେମାନଙ୍କ ଦ୍ୱାରା ଫୁଲ _____ । (ଗୁନ୍ଥ, ଯା)

4. ପନ୍ଦରଦିନ ମା' ଙ୍କ ଦ୍ୱାରା ଭାତ _____ । (ରାନ୍ଧ୍)

5. ଆସନ୍ତା ବର୍ଷ ନର୍ତ୍ତକୀଙ୍କ ଦ୍ୱାରା ନାଚ ___ । (ଶିଖ୍)

V. ଉଦାହରଣ ଅନୁସାରେ ବାକ୍ୟ ପରିବର୍ତ୍ତନ କରନ୍ତୁ ।
(उदाहरण के अनुसार वाक्यों का परिवर्त्तन कीजिए।)

(1) ଉଦାହରଣ :- ସବିତା ନାଚ କରୁଛି ।
ସବିତା ଦ୍ୱାରା ନାଚ କରାଯାଉଛି ।

1. ବୁନୁ ଅଙ୍କ କଷୁଛି ।
2. ସେମାନେ ଚିତ୍ର ଆଙ୍କୁଛନ୍ତି ।
3. ଶିଶୁଟି ଦୁଧ ପିଉଛି ।
4. ନନ୍ଦିତା ନାଚ ଶିଖୁଛି ।
5. ତୁ ଫୁଲ ତୋଳୁଛୁ ।
6. କବିମାନେ କବିତା ଲେଖୁଛନ୍ତି ।

(2) ଉଦାହରଣ :- ମାନସ ଗୀତ ବୋଲିବ ।
ମାନସ ଦ୍ୱାରା ଗୀତ ବୋଲାହେବ ।

1. ପିଲାମାନେ ଖେଳିବେ ।
2. ଭାଉଜ ରୋଷେଇ କରିବେ ।
3. ବାପା ରାମାୟଣ ପଢ଼ିବେ ।
4. ଆଈ ଗପ କହିବେ ।
5. ମୁଁ ରଚନା ଲେଖିବି ।
6. ମୋ ଭଉଣୀ ନାଚ କରିବ ।

(3) ଉଦାହରଣ :- ଏମାନଙ୍କ ଦ୍ୱାରା ଖିଆ ହେବ ।
ଏମାନେ ଖାଇବେ ।

1. ଶିବୁ ଦ୍ୱାରା କ୍ରିକେଟ ଖେଳା ହେବ ।
2. ବାପାଙ୍କ ଦ୍ୱାରା ଭାତ ଖିଆ ହେବ ।
3. ଝିଅ ଦ୍ୱାରା ଫୁଲ ତୋଳାହେବ ।
4. ଶ୍ରମିକମାନଙ୍କ ଦ୍ୱାରା ଗାତ ଖୋଳାହେବ ।
5. ଯୁବକଟି ଦ୍ୱାରା ସିନେମା ଦେଖାହେବ ।

(4) ଉଦାହରଣ :- ରାମବାବୁ ଗୋଟିଏ ଘୋଡ଼ା କିଣିଲେ ।
ଗୋଟିଏ ଘୋଡା ରାମବାବୁଙ୍କ ଦ୍ୱାରା କିଣାହେଲା ।

1. ଗାଁ ଲୋକମାନେ ଯାତ୍ରା ଦେଖିଲେ ।
2. ଭାଉଜ ଭାଷଣ ଦେଲେ ।
3. ମନ୍ତ୍ରୀ ପୁରସ୍କାର ବାଣ୍ଟିଲେ ।
4. ଅଜା ଭାଗବତ ଶୁଣିଲେ ।
5. ପିଲାମାନେ ପରୀକ୍ଷା ଦେଲେ ।
6. ମୁଁ ନନ୍ଦ କାନନ ଦେଖିଲି ।
7. ସେ ଓଡ଼ିଶୀ ନାଚ ନାଚିଲା ।
8. ରାମ ଗୀତ ଗାଇଲା ।

VI. ଉଦାହରଣ ଅନୁସାରେ ତଳେ ଦିଆଯାଇଥିବା ବାକ୍ୟ ଗୁଡ଼ିକୁ ନିଷେଧାର୍ଥକ ବାକ୍ୟରେ ପରିଣତ କରନ୍ତୁ ।
(उदाहरण के अनुसार नीचे दिए गए वाक्यों के निषेधवाचक वाक्य बनाइए।)

(1) ଉଦାହରଣ :- ସରକାରଙ୍କ ଦ୍ୱାରା ନୂଆଘର କରାଯିବ ।
ସରକାରଙ୍କ ଦ୍ୱାରା ନୂଆଘର କରାଯିବ ନାହିଁ ।

1. ପିଲାଙ୍କ ଦ୍ୱାରା କ୍ରିକେଟ୍ ଖେଳାଯିବ ।
2. ମୋ ଦ୍ୱାରା ଭାତ ରନ୍ଧା ହେବ ।
3. ସେମାନଙ୍କ ଦ୍ୱାରା ବହି ପଢ଼ାହେବ ।
4. ଛାତ୍ରମାନଙ୍କ ଦ୍ୱାରା ବକ୍ତୃତା ଦିଆହେବ ।
5. ସୀତା ଦ୍ୱାରା ଗୀତ ବୋଲାହେବ ।

(2) ଉଦାହରଣ :- ତାଙ୍କ ଦ୍ୱାରା ଗପ କୁହାଗଲା ।
ତାଙ୍କ ଦ୍ୱାରା ଗପ କୁହାଗଲା ନାହିଁ ।

1. ଗୀତା ଦ୍ୱାରା ନାଚ ଶିଖାଗଲା ।
2. ଆଈ ଦ୍ୱାରା ପାନ ଖିଆଗଲା ।
3. ଗୋପୀ ଦ୍ୱାରା ଫର୍ମ ପୂରଣ କରାଗଲା ।
4. ତୁମ ଦ୍ୱାରା ପରୀକ୍ଷା ଦିଆଗଲା ।
5. ମୋ ଦ୍ୱାରା ଗୀତ ଗାଇବା ହେଲା ।

## ପଢ଼ନ୍ତୁ ଓ ବୁଝନ୍ତୁ

### ବେକାରୀ ସମସ୍ୟା
### बेकारी समस्या

ଆମ ଦେଶରେ ବେକାରୀ ସମସ୍ୟା ବହୁଳ ପରିମାଣରେ ବଢ଼ିଚାଲିଛି । ଏହା ପାର୍ଲ୍ୟାମେଣ୍ଟ, ବିଧାନସଭା ଓ ଖବର କାଗଜମାନଙ୍କରେ ଚର୍ଚ୍ଚାର କେନ୍ଦ୍ରବିନ୍ଦୁ ପାଲଟିଯାଇଛି । ଯଦି ଲକ୍ଷ ଲକ୍ଷ ଲୋକ ବିନା ଧନ୍ଦାରେ ରହନ୍ତି ତେବେ ସେମାନେ ନିଜ ସହ ଦେଶର ପ୍ରଗତି ମଧ୍ୟ ତଳକୁ ଆଣନ୍ତି । ଆମ ଭାରତରେ ଦେଖାଯାଏ ଯେ, ପରିବାରର ଜଣେ ରୋଜଗାର କରେ । ଅନ୍ୟମାନେ ସେଥିରେ ମୁଣ୍ଡ ଖେଳାନ୍ତି ନାହିଁ । କିନ୍ତୁ ସେମାନେ ଯଦି ଏ ବିଷୟରେ ଭାବିବେ ତେବେ କିଛି କରିପାରିବେ । ଏହା ସମାଜର ମେରୁଦଣ୍ଡ ଭାଙ୍ଗିଦିଏ । ଆଜିର ଶିକ୍ଷିତ ଯୁବକମାନେ ଏହି ପରିସ୍ଥିତିରେ ପଡ଼ି ନାନା ପ୍ରକାର ଖରାପ କାମ କରିବାକୁ ବାଧ୍ୟ ହୋଇଥାନ୍ତି । କିନ୍ତୁ ଏହାର ମୂଳ କାରଣ ହେଲା, ଜନସଂଖ୍ୟା ବୃଦ୍ଧି । ଏହା ସହିତ ଶିକ୍ଷାର ଅଧୋଃପତନ ମଧ୍ୟ ସମପରିମାଣରେ ଦାୟୀ ।

ବର୍ତ୍ତମାନ ଏସବୁର ସମାଧାନ ପାଇଁ କିଛି ଚିନ୍ତା କରାଯିବା ଉଚିତ । ସମସ୍ତେ କହୁଛନ୍ତି ବେକାର ଯୁବକମାନଙ୍କ ପାଇଁ କିଛି କାମଧନ୍ଦା ଯୋଗେଇ ଦିଆଯାଉ । ଏଥିପାଇଁ ସାଧାରଣତଃ ସରକାରଙ୍କୁ ଦାୟୀ କରାଯାଏ । ଏସବୁ କେବଳ ସରକାରଙ୍କ ଦ୍ୱାରା କରାଯିବା ସମ୍ଭବ ନୁହେଁ, ଜନସାଧାରଣ ସମ୍ପୂର୍ଣ୍ଣ ଭାବେ ସହଯୋଗ କରିବା ଉଚିତ । ଯୁବକମାନଙ୍କୁ ନିଜ ଗୋଡ଼ରେ ଠିଆ ହେବାପାଇଁ ବିଭିନ୍ନ ପ୍ରକାର ବୈଷୟିକ ଶିକ୍ଷା ଦିଆଯିବା ଉଚିତ । ସେମାନଙ୍କ ଦ୍ୱାରା କାଠକାମ, ତାରକସୀ କାମ, ଚାନ୍ଦୁଆ ତିଆରି, ଶିଙ୍ଗକାମ ପ୍ରଭୃତି ଶିଖାଯାଉ । ଯାହାଫଳରେକି ସେମାନେ ନିଜ ଦେଶର ଚାରୁକଳା ମାଧ୍ୟମରେ ଉପାର୍ଜନ କ୍ଷମ ହୋଇପାରିବେ । ସରକାର ସେମାନଙ୍କ ଦ୍ୱାରାପ୍ରସ୍ତୁତ ଜିନିଷ ଗୁଡ଼ିକୁ ବିଦେଶକୁ ପଠେଇବାର ବ୍ୟବସ୍ଥା କରନ୍ତୁ ।

ଯଦି କୁକୁଡ଼ା ପାଳନ, ମାଛ ଚାଷ, ଛତୁ ଚାଷ ପାଇଁ ଯୁବକମାନଙ୍କୁ ଋଣ ଯୋଗେଇ ଦିଆଯିବ, ତେବେ ସେମାନେ କିଛି ଉପକାର ପାଇବେ । ତେବେ ଯାଇ ବେକାର ସମସ୍ୟା କିଛି ପରିମାଣରେ ଦୂର କରାଯାଇ ପାରିବ ।

### शब्दार्थ

| **ओड़िआ शब्द** | **हिंदी अर्थ** |
|---|---|
| ବେକାର | बेकारी/बेरोज़गारी |
| ସମସ୍ୟା | समस्या |
| ପ୍ରବଳ | बहुत |

| | |
|---|---|
| ପ୍ରଭାବ ବିସ୍ତାର | प्रभाव विस्तार |
| ସମାଧାନ | समाधान करना |
| କାମଧନ୍ଦା | काम-धंधा |
| ଯୋଗେଇ ଦିଆଯାଉ | सहायता दी जाए |
| କାଠ କାମ | लकड़ी का काम |
| ଚାନ୍ଦୁଆ | शामियाना |
| ଶିଙ୍ଗକାମ | सींगों से बनाए जाने वाले काम |
| ଚାରୁକଳା | ललित कला, सूक्ष्म कला |
| ଉପାର୍ଜନକ୍ଷମ | उपार्जन क्षम, (जीविका आर्जन करने में सक्षम) |
| ପ୍ରସ୍ତୁତ | प्रस्तुत |
| ଜିନିଷ | चीज़, वस्तु |
| କୁକୁଡ଼ା ପାଳନ | मुर्गी पालन |
| ମାଛ ଚାଷ | मछली पालन |
| ଛତୁ ଚାଷ | छत्रक, कुकुरमुत्ता की खेती |
| ବୈଷୟିକ ଶିକ୍ଷା | तकनीकी शिक्षा |

I. ଅନୁଚ୍ଛେଦର ଆଧାର ଉପରେ ନିମ୍ନରେ ଦିଆଯାଇଥିବା ପ୍ରଶ୍ନର ଉତ୍ତର ଦିଅନ୍ତୁ।
(अनुच्छेद के आधार पर नीचे दिए गए प्रश्नों के उत्तर दीजिए।)

1. କେଉଁ ମାନଙ୍କ ପାଇଁ କାମଧନ୍ଦା ଯୋଗେଇ ଦିଆଯିବ ?
2. ବେକାର ସମସ୍ୟା ପାଇଁ ସାଧାରଣତଃ କାହାକୁ ଦାୟୀ କରାଯାଏ ?
3. ଚାରୁକଳା ଶିକ୍ଷାକଲେ ଯୁବକମାନଙ୍କର କ'ଣ ଲାଭ ହେବ ?
4. କେଉଁ କେଉଁ କାମ ପାଇଁ ଯୁବକମାନଙ୍କୁ ଋଣ ଯୋଗାଇଦେବା ଆବଶ୍ୟକ ?
5. ବେକାର ସମସ୍ୟା ଦୂର କରିବା ପାଇଁ କେଉଁମାନେ ଚେଷ୍ଟା କରିବା ଉଚିତ୍ ?

II. ପ୍ରତ୍ୟେକ ଶବ୍ଦ ଗୁଡିକୁ ଠିକ୍ କ୍ରମରେ ସଜାଇ ବାକ୍ୟ ଗଠନ କରନ୍ତୁ।
(नीचे दिए गए प्रत्येक शब्द समुह के शब्दों को सही क्रम में रखकर वाक्य बनाइए।)

1. ଏ, ପାଇଁ, ସବୁର, ଚିନ୍ତା, କିଛି, କରାଯିବା, ଉଚିତ, ସମାଧାନ
2. କେନ୍ଦ୍ରବିନ୍ଦୁ , ପାଲଟି ଯାଇଛି, ଚର୍ଚ୍ଚାର, ବିଧାନସଭା, ଏହା, ପାର୍ଲାମେଣ୍ଟ, ଓ ଖବରକାଗଜ

3. ସେମାନଙ୍କ, ସରକାର, ପ୍ରସ୍ତୁତ, ଗୁଡ଼ିକ, ଦ୍ୱାରା, ଜିନିଷ, କରନ୍ତୁ, ବିଦେଶକୁ, ବ୍ୟବସ୍ଥା, ପଠେଇବାର
4. କିଛି ଉପକାର, ସେମାନେ, ପାଇବେ, ତେବେ, ଋଣ, ଯୋଗେଇ, ଯୁବକମାନଙ୍କୁ, ଦିଆଯିବ, ଯଦି, କୁକୁଡ଼ା ପାଳନ, ଛତୁଚାଷ ପାଇଁ, ମାଛଚାଷ
5. ପାରିବ, ତେବେ, ସମସ୍ୟା, ଯାଇ, ବେକାର, ଦୂର, କରାଯାଇ, କିଛି ପରିମାଣରେ

III. ନିମ୍ନ ଅନୁଚ୍ଛେଦକୁ ଓଡ଼ିଆରେ ଅନୁବାଦ କରନ୍ତୁ ।
(ओड़िआ में अनुवाद कीजिए।)

आजकल सरकार के द्वारा बेरोज़गारों की सहायता की जा रही है। विद्यालय और विश्वविद्यालयों में तकनीकी शिक्षा पर विशेष ध्यान दिया जा रहा है। बड़े-बड़े अनुभवी शिक्षकों के द्वारा बिजली, लकड़ी, कंप्यूटर आदि से संबंधित काम सिखाए जा रहे हैं। युवक शिक्षा खत्म करने के बाद अपने-अपने छोटे-छोटे कारखाने खोल कर अपना जीवन निर्वाह कर सकते हैं। विद्यालयों में बच्चों को बागवानी का काम, बेंत की कुर्सियाँ बनाना, चटाइयाँ बनाना, थैले सीना, लकड़ी की चीज़ें बनाना आदि सिखाए जा रहे हैं। इस तरह के प्रशिक्षण के बाद युवक स्वयं धनोपार्जन कर सकेंगे। उन के द्वारा अन्य बेरोज़गारों की सहायता की जाएगी। लघु-उद्योगों को भी बढ़ावा मिलेगा। जब इन लघु उद्योगी का संख्या बढ़ जाएगी तो सहकारी समितियाँ बनाई जा सकेंगी। आपस में प्रतियोगिता के कारण उत्पादों में उत्तमता प्राप्त की जा सकेगी। सर्वोत्कृष्ट उत्पाद की निर्यात क्षमता बढ़ेगी। देश का भला होगा और व्यक्ति का भी।

IV. କୌଣସି ଏକ ନଈବନ୍ଧର ସୁବିଧା ଓ ଅସୁବିଧା ଉପରେ ଗୋଟିଏ ଅନୁଚ୍ଛେଦ ଲେଖନ୍ତୁ ।
(बाँधों के उपकार तथा अपकार के बारे में एक अनुच्छेद ओड़िआ में लिखिए।)

## टिप्पणियाँ

I. पाठ 1 से 22 तक आप विविध प्रकार के वाक्यों से परिचित हुए हैं। उनमें से कुछ वाक्य निम्न प्रकार के हैं।

1. ମୋ ନାଁ ରମେଶ ତିୱାରୀ । — मेरा नाम रमेश तिवारी।
   मो नाँ रमेश तिवारी।
2. ମୋତେ ଗୋଟିଏ ଭାଷାକୋଷ ଦିଅ । — मुझे एक भाषाकोश दीजिए।
   मोते गोटिए भाषाकोष दिअ।
3. ମୁଁ ଖଣ୍ଡଗିରି ଦେଖିଛି । — मैंने खंडगिरी देखा है।
   मुँ खंड़गिरी देखिछि।

| | | |
|---|---|---|
| 4. | ମୋ ସ୍ତ୍ରୀ କମ୍ପ୍ୟୁଟର ପଢୁଛନ୍ତି ।<br>मो स्त्री कंप्यूटर पढ़ुछन्ति। | मेरी स्त्री कंप्युटर पढ़ रही है। |
| 5. | ମୁଁ କଟକ ଯିବି ।<br>मुँ कटक जिबि। | मैं कटक जाउँगा। |
| 6. | ସେମାନେ ସ୍କୁଲକୁ ଯିବେ ।<br>सेमाने स्कुलकु जिबे। | वे स्कूल (को) जाएगें। |
| 7. | ମୁଁ ଖାଇକରି ଶୋଇ ପଡ଼ିଲି ।<br>मुँ खाइकरि शोइ पड़िलि। | मैं खा कर सो गया। |
| 8. | ସେ ଖାଉଖାଉ ଶୋଇ ପଡ଼ିଲା ।<br>से खाउखाउ शोइ पड़िला। | वह खाते खाते सो गया। |

ऊपर के सभी वाक्यों में कर्ता को प्रधानता दी गई है। ऐसे वाक्यों को कर्तृवाच्य कहते हैं।

II. इस पाठ में निम्न प्रकार के वाक्यों का प्रयोग भी हुआ है।

| | | |
|---|---|---|
| 1. | ସେମାନଙ୍କ ଦ୍ୱାରା ସାଂସ୍କୃତିକ ଉତ୍ସବ କରାଯିବ ।<br>सेमानंक द्वारा सांस्कृतिक उत्सब कराजिब। | उनलोगों के द्वारा सांस्कृतिक उत्सव कराया जाएगा। |
| 2. | ତାଙ୍କ ଦ୍ୱାରା ପିଲାମାନଙ୍କୁ ପୁରସ୍କାର ଦିଆଯିବ ।<br>तांक द्वारा पिलामानंकु पुरस्कार दिआजिब। | उनके द्वारा बच्चोंको पुरष्कार दिया जाएगा। |
| 3. | ମନ୍ତ୍ରୀଙ୍କ ଦ୍ୱାରା ନୂଆ ସ୍କୁଲଘର ଉଦ୍‌ଘାଟନ କରାଗଲା ।<br>मंत्री के नूआ स्कुलघर उद्घाटन करागला। | मंत्रीजी के द्वारा स्कूल की नई इमारत का उद्घाटन् कराया गया। |
| 4. | ପିଲାମାନଙ୍କର ଖେଳ ପ୍ରତିଯୋଗିତା କରାହେବ ।<br>पिलामानंकर खेळ प्रतिजोगिता कराहेब। | बच्चों की  खेल प्रतियोगिता कराई जाएगी। |

| | | |
|---|---|---|
| 5. | ଶିକ୍ଷକଙ୍କ ଦ୍ୱାରା ଝିଅମାନଙ୍କୁ ଓଡ଼ିଶୀ ନାଚ ଶିଖାଗଲା ।<br>शिक्षकंक द्वारा झिअमानंकु ओड़िशी नाच शिखागला। | शिक्षकों के द्वारा लड़कियों को ओड़िशी नृत्य सिखाया गया । |
| 6. | ମୋ ଦ୍ୱାରା ପାଠ ପଢ଼ାଯିବ ।<br>मो द्वारा पाठ पढ़ाजिब। | मेरे द्वारा पाठ पढ़ा जाएगा। |
| 7. | ପ୍ରତିଭା ରାୟଙ୍କ ଦ୍ୱାରା ଉପନ୍ୟାସ ଲେଖାଗଲା ।<br>प्रतिभा रायंक द्वारा उपन्यास लेखागला। | प्रतिभा राय के द्वारा उपन्यास लिखा गया। |
| 8. | ସେମାନଙ୍କ ଦ୍ୱାରା ନାଚ ଗୀତ ବି କରାଯିବ ।<br>सेमानंक द्वारा नाच गीत बि कराजिब। | उन लोगें के द्वारा नाच-गाना भी कराया जाएगा। |
| 9. | ତା' ଦ୍ୱାରା ମୋ କାମ କରେଇନେବି ।<br>ता' द्वारा मो काम करेइनेबि। | उस से अपना काम करवाउँगा। |
| 10. | ମୋ ଦ୍ୱାରା ରବୀନ୍ଦ୍ର ମଣ୍ଡପ ଠାରେ ଓଡ଼ିଶୀ ନାଚ ନଚାଯିବ/ନଚାହେବ ।<br>मो द्वारा रवींद्र मण्ड़प ठारे ओड़िशी नाच नचाजिब / नचाहेब। | मेरे द्वारा रवींद्र मंडप में ओड़िशी नाच नचाजाएगा। |

ऊपर दिए गए वाक्यों में कर्म को प्रधानता दी गई है। इस प्रकार के वाक्यों को कर्म वाच्य कहते हैं। ओड़िआ में कर्मवाच्य निम्न प्रकार से बनते हैं।

| | |
|---|---|
| ମୁଁ କାମ କରିବି > ମୋ ଦ୍ୱାରା କାମ କରାଯିବ / କରାହେବ ।<br>मुँ काम करिबि > मो द्वारा काम कराजिब / कराहेब। | मैं काम करूँगा। > मुझसे काम किया जाएगा। |
| ପିଲାମାନେ ଖେଳ ଖେଳିବେ > ପିଲାମାନଙ୍କ ଦ୍ୱାରା ଖେଳ ଖେଳାହେବ ।<br>पिलामाने खेळ खेळिबे > पिलामानंक द्वारा खेळ खेळाहेब। | बच्चे खेल खेलेंगे > बच्चों से खेल खेला जाएगा। |

ऊपर के उदाहरणों में कुछ कर्तृवाच्य के वाक्य और उनके कर्मवाच्य के रूप दिए गए हैं। ध्यान दीजिए कि ओड़िआ में कर्तृवाच्य के कर्मवाच्य बनाने के लिए कर्ता की तृतीय विभक्ति का प्रयोग किया जाता है। और प्रधान क्रिया के साथ -'ଆ' (-आ) प्रत्यय जोड़कर उसके बाद -'ଯିବ' (जिबा) अथवा -'ହେବ' (हेबा) सहायक क्रिया के विविध रूप जोड़ जाते हैं।

ମୋ ଦ୍ୱାରା ପାଠ ପଢ଼ାହେଲା। मुझसे पाठ पढ़ा गया।
मो द्वारा पाठ पढ़ाहेला।
-କର୍ + -ଆ = -କରା + -ଯିବ = କରାଯିବ किया जाएगा।
-कर् + - आ = -करा + -जिब = कराजिब
-କର୍ + -ଆ = -କରା + -ହେବ = କରାହେବ किया जाएगा।
-कर् + - आ = -करा + -हेब = कराहेब

ध्यान दीजिए कि ओड़िआ में कर्मवाच्य के भविष्यतकाल में सहायक क्रिया 'ହେବ' (हेब), 'होगा' क्रिया का प्रयोग होता है।

# ପାଠ 24 पाठ

## ଓଡ଼ିଶାର 'ଯାତ୍ରା'
## ओड़िशार 'जात्रा'

ଯୋସେଫ୍: ପ୍ରତାପ ବାବୁ ! ଆପଣତ ଓଡ଼ିଶାର ଜଣେ ପ୍ରତିଷ୍ଠିତ ନାଟ୍ୟଶିଳ୍ପୀ। ଗତ ସପ୍ତାହରେ 'ରବିନ୍ଦ୍ର ମଣ୍ଡପ'ରେ ଯେଉଁ ନାଟକ ହୋଇଥିଲା ଆପଣ କ'ଣ ସେଇ ନାଟକ ଦେଖିଥିଲେ?

ପ୍ରତାପ : ହଁ ଦେଖିଥିଲି। ସେହି ବିଷୟରେ ଆପଣ କ'ଣ ମୋତେ କିଛି ପଚାରିବାକୁ ଚାହୁଁଛନ୍ତି ?

ଯୋସେଫ୍ : ହଁ, ଆପଣଙ୍କୁ ସେ ନାଟକ କେମିତି ଲାଗିଲା ?

ପ୍ରତାପ : ହଁ ଏକ ପ୍ରକାର ଲାଗିଲା।

ଯୋସେଫ୍: ଏକ ପ୍ରକାର ମାନେ? ଭଲ ଲାଗିଲା କିମ୍ବା ଖରାପ ଲାଗିଲା?

ପ୍ରତାପ : ଯଦି ଆପଣ ମୋ ଠାରୁ ସତ ଶୁଣିବାକୁ ଚାହାନ୍ତି ତେବେ ମୁଁ କହିବି। ସେ ନାଟକ ମତେ ସେତେ ଭଲ ଲାଗିଲା ନାହିଁ।

## ओड़िशा की यात्रा

जोसेफ : प्रताप बाबु ! आप तो ओड़िशा के एक प्रतिष्ठित नाट्यशिल्पी हैं। पिछले सप्ताह 'रविंद्र मंड़प' में जो नाटक हुआ था क्या आप ने वह नाटक देखा था?

प्रताप : हाँ, देखा था। उसी विषय में आप क्या मुझे कुछ पुछने केलिए चाहते हैं?

जोसेफ : हाँ, आपको वह नाटक कैसा लगा?

प्रताप : हाँ, एक प्रकार लगा।

जोसेफ : एक प्रकार का मतलब? क्या अच्छा लगा या बुरा लगा?

प्रताप : यदि आप मुझसे केवल सच सुनने केलिए चाहते हैं तब मैं कहूँगा कि वह नाटक मुझे उतना अच्छा नहीं लगा।

जोसेफ : क्या उसका कारण मैं जान सकता हूँ?

प्रताप : कारण तो बहूत हैं। मैं तो पुराना जमाने का हूँ। तब हमारे नाटक

ଯୋସେଫ୍: ତା'ର କାରଣ କ'ଣ ମୁଁ ଜାଣିପାରେ କି ?

ପ୍ରତାପ : କାରଣ ତ ବହୁତ । ମୁଁ ତ ପୁରୁଣା ଯୁଗର । ଆମ ସେତେବେଳର ନାଟକ ଆଉ ଏବେକାର ନାଟକ ମଧ୍ୟରେ ବହୁତ ତଫାତ୍ ।

ଯୋସେଫ୍: ଆପଣଙ୍କ ସମୟର ନାଟକ ବିଷୟରେ ମତେ ଯଦି କିଛି କହନ୍ତେ, ତେବେ ଭଲ ହୁଅନ୍ତା ।

ପ୍ରତାପ : ଦେଖନ୍ତୁ ଆଜ୍ଞା, ଓଡ଼ିଶାରେ 'ନାଟକ' କହିଲେ ସେତେବେଳେ ଆମେ 'ଯାତ୍ରା' କୁ ହିଁ ବୁଝୁଥିଲୁ ।

ଯୋସେଫ୍: ସେ ସମୟ ଏବେ କ'ଣ ଆଉ ଅଛି ? ବର୍ତ୍ତମାନ ଆମେ ଯେଉଁ 'ଯାତ୍ରା' ଦେଖୁଛୁ ସେଥିରେ ଅନେକ ଆଧୁନିକ ଶୈଳୀ ପ୍ରୟୋଗ ହେଉଛି ।

ପ୍ରତାପ : ହଁ ଆଜ୍ଞା, ଗତ ବର୍ଷ ଆମେ 'ଜନତା ଗଣନାଟ୍ୟ' ଦ୍ୱାରା ତିନି ଦିନ ଧରି ଯାତ୍ରା କରେଇଥିଲୁ । ହେଲେ ଯାହା ଦେଖିଲୁ, ସେଥିରୁ ମନେ ହେଲା ଯେ ଆଜି କାଲିକା ପିଲାଙ୍କ ଦ୍ୱାରା ଯାତ୍ରା

**और अब के नाटक में बहुत फरक हैं।**

**जोसेफ : आप के समय के नाटक के विषय में यदि मुझे कुछ बताते तो अच्छा होता।**

**प्रताप : देखिए जी, तब ओड़िशा का 'नाटक' कहने से 'यात्रा' ही समझते थे।**

**जोसेफ : क्या अब वह समय रहा है? अब हम जो 'यात्रा' देख रहे हैं, उसमें आधुनिक शैली का बहुत प्रयोग हो रहा है।**

**प्रताप : जी हाँ। पिछले साल 'जनता गणनाट्य' के द्वारा तीन दिन तक लगातार यात्रा कराया गया था। लेकिन जो देखा, उस से यह लगा कि आजकल के लड़कों से 'यात्रा' नहीं किया जा सकेगा।**

**जोसेफ : अब तो नारी की भूमिका में सुंदर लड़कियाँ ही अभिनय कर रही हैं। क्या आपके समय में लड़कियाँ अभिनय करती थीं ?**

**प्रताप : हाँ, लेकिन जितनी लड़कियाँ अब नाटक करने केलिए आ रही हैं तब**

କରାଯାଇ ପାରିବନାହିଁ ।

ଯୋସେଫ୍: ଏବେ ତ ନାରୀ ଚରିତ୍ରରେ ସୁନ୍ଦରୀ ଝିଅମାନେ ଅଭିନୟ କରୁଛନ୍ତି । ଆପଣଙ୍କ ସମୟରେ ଝିଅମାନେ କ'ଣ ଅଭିନୟ କରୁଥିଲେ?

ପ୍ରତାପ : ହଁ, କିନ୍ତୁ ଏବେ ଯେତେ ଝିଅ ନାଟକ କରିବାକୁ ଆସୁଛନ୍ତି ସେତେବେଳେ ସେତେ ଝିଅ ନଥିଲେ । ଯେତେବେଳେ ମୁଁ ନାଟକରେ ଅଭିନୟ ଆରମ୍ଭ କରିଥିଲି ସେତେବେଳେ ଝିଅ ଭୂମିକାରେ ୨ ଜଣ ଝିଅ ଅଭିନୟ କରୁଥିଲେ । କିନ୍ତୁ ମୋ ବାପାଙ୍କ ସମୟରେ ଗୋଟିଏ ବି ଝିଅ ନାଟକ କରୁନଥିଲେ । ନାଟକ କରିବା ତ ଦୂରର କଥା । ନାଟକ ଦେଖିବାକୁ ମଧ୍ୟ ବହୁତ କମ୍ ଝିଅ ଆସୁଥିଲେ । ସେତେବେଳର ନାଟକ କେବଳ ପୌରାଣିକ କଥା ଉପରେ ହିଁ ଆଧାରିତ ହେଉଥିଲା ।

ଯୋସେଫ୍: ଆପଣ କ'ଣ ଭାରତ ସ୍ୱାଧୀନତା ପୂର୍ବ ସମୟର କଥା କହୁଛନ୍ତି ?

ପ୍ରତାପ : ହଁ ହଁ, ସେତେବେଳେ ପୁଅମାନେ ହିଁ ନାରୀ

उतनी लड़कियाँ नहीं थीं। जब मैं ने नाटक में अभिनय शुरु किया था तब लड़की की भूमिका में दो ही लड़कियाँ अभिनय करती थीं। परंतु मेरे पिताजी के समय में एक भी लड़की नाटक नहीं करती थी। नाटक करना तो दूर की बात थी। नाटक देखने केलिए भी बहुत कम लड़कियाँ आती थीं। उस समय के नाटक केवल पौराणिक कथाओं पर आधारित थे।

जोसेफ : क्या आप भारत स्वाधीनता पूर्व की बात कर रहे हैं?

प्रताप : हाँ, हाँ। तब लड़के लोग ही नारी भूमिका में अभिनय करते थे। मुझे याद आ रहा है, हरि नाम के बरहामपुर का एक छोकरा था। वह 'कर्णवध' में द्रौपदी की भूमिका में अपने अभिनय से दर्शकों को रुलाया करता था। वह सबके द्वारा प्रशंसित हो जाता था।

जोसेफ : प्रताप बाबु ! हमने सुना था कि लोग स्वयं गीत गाते-गाते अभिनय करते थे? लेकिन अब गानेवाले तो अलग हैं।

ଚରିତ୍ରରେ ଅଭିନୟ୍ କରୁଥିଲେ। ମୋର ମନେ ପଡୁଛି ହରି ବୋଲି ଏକ ବରହ୍ମ ପୁରିଆ ଟୋକାଟାଏ ଥିଲା ସେ 'କର୍ଣ୍ଣବଧ' ରେ ଦ୍ରୌପଦୀ ଚରିତ୍ରରେ ଅଭିନୟ୍ କରି ଦର୍ଶକଙ୍କୁ କନ୍ଦେଇ ଦେଉଥିଲା। ସେ ସମସ୍ତଙ୍କ ଦ୍ୱାରା ପ୍ରଶଂସିତ ହେଉଥିଲା।

ଯୋସେଫ୍: ପ୍ରତାପ ବାବୁ ! ଆମେ ଶୁଣିଥିଲୁ, ସେମାନେ କୁଆଡ଼େ ନିଜେ ଗୀତ ଗାଇଗାଇ ଅଭିନୟ୍ କରୁଥିଲେ? କିନ୍ତୁ ଏବେ ଗାଇବାବାଲା ତ ଅଲଗା।

ପ୍ରତାପ : ହଁ, ସେ କଥା ଖାଣ୍ଟି ସତ। ସେ କାଳରେ ଭଲ ଅଭିନେତା ହେବା ପାଇଁ ନାଚ, ଗୀତ ଆଦି ସବୁ କିଛି ଶିଖିବାକୁ ପଡୁଥିଲା। ଯିଏ ଯେତେ ଭଲ ଗାଇ ପାରୁଥିଲା, ସିଏ ସେତେ ସୁନ୍ଦର ଭୂମିକା ବି ପାଉଥିଲା।

ଯୋସେଫ୍: ସିନେମାଗୁଡ଼ିକରେ ମଧ୍ୟ ଅଭିନେତା ଓ ଅଭିନେତ୍ରୀମାନେ ଭଲ ନାଚି ପାରିଲେ ସେମାନଙ୍କୁ ବହୁତ ସୁବିଧା ମିଳୁଥିଲା। ଆଚ୍ଛା କହିଲେ ଆପଣଙ୍କ ସମୟ୍ରେ କେଉଁ କେଉଁ ନାଟ୍ୟକାର ମାନଙ୍କ

**प्रताप** : **हाँ, वह तो एकदम सच है। उस समय अच्छा अभिनेता होने के लिए नृत्य, संगीत आदि सब सीखना पड़ता था। जो जितना अच्छा गा सकता था, वह उतनी सुंदर भूमिका भी पाता था।**

**जोसेफ** : **सिनेमा में भी अभिनेता और अभिनेत्री अच्छा नृत्य करने से उन को ज्यादा सुविधा मिलती थी। अच्छा, बताइए आप के समय में किन किन नाटककारों के 'यात्रा' ज्यादा किए जाते थे?**

**प्रताप** : **'यात्रा' कहने से हम 'वैष्णव-पाणि' ही समझते थे। उन्होंने असंख्य 'यात्राएँ' लिखी हैं। उनकी 'यात्राओं' में 'कर्णवध' 'रंगसभा' मुझे बहुत अच्छे लगते हैं।**

**जोसेफ** : **अच्छा! क्या आपके समय में आजकल की तरह दृश्य-सज्जा के प्रति विशेष ध्यान दिया जाता था?**

**प्रताप** : **नहीं बाबु, आजकल कितने प्रकार की सीन-सीनरी, प्रकाश-व्यवस्था,**

ଯାତ୍ରା ବେଶୀ କରାଯାଉଥିଲା ?

ପ୍ରତାପ : ଯାତ୍ରା କହିଲେ ଆମେ 'ବୈଷ୍ଣବ ପାଣି'ଙ୍କୁ ହିଁ ବୁଝୁଥିଲୁ । ସେ ଅସଂଖ୍ୟ ଯାତ୍ରା ଲେଖିଛନ୍ତି । ତାଙ୍କ ଯାତ୍ରା ଗୁଡ଼ିକ ଭିତରେ 'କର୍ଣ୍ଣବଧ', 'ରଙ୍ଗସଭା' ମତେ ଭାରି ଭଲଲାଗେ ।

ଯୋସେଫ୍: ଆଚ୍ଛା, ଆପଣଙ୍କ ବେଳେ ଆଜିକାଲି ପରି କ'ଣ ଦୃଶ୍ୟ ସଜ୍ଜା ପ୍ରତି ବିଶେଷ ଦୃଷ୍ଟି ଦିଆଯାଉଥିଲା ?

ପ୍ରତାପ : ନାଇଁ ବାବୁ, ଆଜିକାଲି କେତେ ପ୍ରକାର ସିନ୍-ସିନେରୀ, ଆଲୋକ ସଜ୍ଜା ବ୍ୟବହାର କରାଯାଉଛି । ଆମ କାଳେ ସେ ସବୁ ନଥିଲା । ହେଲେ ସେତେବେଳେ ସେଇ ପ୍ରକାରର ଅଭିନେତା ସବୁଥିଲେ, ଯେଉଁମାନେ ନିଜ ଅଭିନୟର କଳା କୁଶଳତା ଏବଂ ନିଷ୍ଠାପର ଗୁଣଦ୍ୱାରା ନାଟକ ଗୁଡ଼ିକର ମହତ୍ତ୍ୱ ବଢ଼ାଇ ଦେଉଥିଲେ । ଆଜିକାଲି ଏପରି କଳାକାର ବହୁତ କମ୍ ଅଛନ୍ତି ।

ଯୋସେଫ୍: ପ୍ରତାପ ବାବୁ ! ଯାତ୍ରାର ଭବିଷ୍ୟତ ସମ୍ପର୍କରେ ଆପଣଙ୍କ

आदि का व्यवहार किया जाता है! लेकिन हमारे समय में ये सब नहीं थे। तब उस प्रकार के अभिनेता थे जो अपनी अभिनय की कुशलता और निष्ठापर गुणों से नाटकों का महत्त्व बढ़ा देते थे। आजकल ऐसे कलाकार बहुत कम हैं।

जोसेफ : प्रताप बाबु ! 'यात्रा' के भविष्य के बारे में आपका क्या अनुमान है? आधुनिक नाट्यशिल्पियों को यदि आप कुछ उपदेश देते, तो वे लोग उपकृत होते।

प्रताप : बड़ी बात यह है कि 'यात्रा' परंपरा के आदिमरूप की रक्षा करना। विविध प्रकार के दृश्य-दृश्यावलियों का प्रयोग न कर के मुक्त रंगमंच में ही 'यात्रा' करना चाहिए। वरना ऐसे नाटक करते करते, ओड़िशा की पुरातन 'यात्रा शैली' आधुनिक नाटकों के बीच में गुम हो जाएगी।

जोसेफ : मैं सोचता हूँ की वैष्णव पाणि को लोग धीरे-धीरे भूल जाएँगे।

ଅନୁମାନ କ'ଣ? ଆଧୁନିକ ନାଟ୍ୟ ଶିଳ୍ପୀମାନଙ୍କୁ ଆପଣ ଯଦି କିଛି ଉପଦେଶ ଦିଅନ୍ତେ, ତେବେ ସେମାନେ ଉପକୃତ ହୁଅନ୍ତେ ।

ପ୍ରତାପ : ବଡ଼ କଥା ହେଲା ଯାତ୍ରା ପରମ୍ପରାର ମୌଳିକତା ରକ୍ଷା କରିବା । ବିଭିନ୍ନ ପ୍ରକାର ସିନ୍- ସିନେରୀ ପ୍ରୟୋଗ ନକରି ମୁକ୍ତ ରଙ୍ଗ ମଞ୍ଚରେ ହିଁ ଯାତ୍ରା କରାଯିବା ଉଚିତ । ନହେଲେ ଆଜ୍ଞା, ଏମିତି ନାଟକ କରୁ କରୁ ଓଡ଼ିଶାର ପୁରାତନ ଯାତ୍ରା ଶୈଳୀ ଆଧୁନିକ ନାଟକ ଭିତରେ ହଜିଯିବ ।

ଯୋସେଫ୍: ମୁଁ ତ ଭାବୁଛି ଧୀରେ ଧୀରେ ଲୋକେ ବୈଷ୍ଣବ ପାଣିଙ୍କୁ ଭୁଲିଯିବେ ।

ପ୍ରତାପ : ଆପଣ ସତ କହିଲେ । ହେଲେ ଆପଣମାନଙ୍କ ପରି ଯୁବ କଳାକାରମାନେ ଓଡ଼ିଆ ଯାତ୍ରାକୁ ବଞ୍ଚାଇ ରଖିବା ଉଚିତ । ଆପଣମାନେ ହିଁ କଳାକାରମାନଙ୍କୁ ଠିକ୍ ରୂପେ ମାର୍ଗ ଦର୍ଶନ ଦେଇପାରିବେ ।

ଯୋସେଫ୍: ମୋ ମତରେ ଆପଣ ଯଦି ନାଟ୍ୟକଳା ଭଲଭାବରେ

**प्रताप : आप ने सही बात कही। इसलिए आप जैसे युवा कलाप्रेमियों को ओड़िआ यात्रा को बचाए रखना चाहिए। आप लोग ही कलाकारों को सही मार्गदर्शन दे सकते हैं।**

**जोसेफ : मेरी राय में आप नाटक कला अच्छी तरह सिखाने केलिए एक स्कूल खोलेंगे तो बहुत अच्छा होगा। नवयुवक कलाकारों को सच्चा प्रशिक्षण आप जैसे महान कलाकारों से ही पाना है।**

**प्रताप : लेकिन मेरी उम्र तो बढ़ गई है। शारीरिक शक्ति भी कम हो गई है।**

**जोसेफ : निदेशन देने में आप तैयार होंगे तो ऐसा एक स्कूल खोलने केलिए मैं और मेरे साथी तैयार हैं। आप निश्चिंत रहिए। सब इंतज़ाम कर के हम आप के पास आएँगे।**

**प्रताप : अच्छा जी, फिर मिलेंगे।**

ଶିଖେଇବା ପାଇଁ ଗୋଟିଏ
ସ୍କୁଲ ଖୋଲି ପାରନ୍ତେ ତେବେ
ବହୁତ ଭଲ ହେବ। ନବ
କଳାକାରମାନଙ୍କୁ ଉଚିତ୍
ପ୍ରଶିକ୍ଷଣ ଆପଣଙ୍କପରି ମହାନ୍
କଳାକାରଙ୍କଠାରୁ ହିଁ ପାଇବା
ଦରକାର।

ପ୍ରତାପ : ହେଲେ ମୋ ବୟସ ତ ବଢ଼ି
ଗଲାଣି। ଶାରୀରିକ ଶକ୍ତି
ମଧ୍ୟ କମି ଗଲାଣି।

ଯୋସେଫ୍: ନିର୍ଦ୍ଦେଶନା ଦେବାପାଇଁ
ଆପଣ ଯଦି ପ୍ରସ୍ତୁତ
ହୋଇପାରନ୍ତେ ତେବେ ଏପରି
ଗୋଟିଏ ସ୍କୁଲ ଖୋଲିବା ପାଇଁ
ମୁଁ ଏବଂ ମୋ ସାଙ୍ଗମାନେ
ପ୍ରସ୍ତୁତ ଅଛନ୍ତି। ଆପଣ
ନିଶ୍ଚିନ୍ତ ରୁହନ୍ତୁ। ସବୁ ପ୍ରକାର
ବ୍ୟବସ୍ଥା କରି ଆମେ
ଆପଣଙ୍କ ପାଖକୁ ଆସିବୁ।

ପ୍ରତାପ : ଆଜ୍ଞା ହଁ, ପୁଣି ଦେଖାହେବ।

## शब्दार्थ

| ओड़िआ शब्द | हिंदी अर्थ |
|---|---|
| ସାକ୍ଷାତକାର | साक्षात्कार |
| ପ୍ରତିଷ୍ଠିତ | प्रतिष्ठित |
| ନାଟ୍ୟଶିଳ୍ପୀ | नाट्य शिल्पी |
| ନାଟକ | नाटक |

| | |
|---|---|
| ଯାତ୍ରା | 'यात्रा' 'गण-नाट्य' |
| ଆଧୁନିକ | आधुनिक |
| ଶୈଳୀ | शैली |
| ଆଜି କାଲିକା | आजकल का |
| ଚରିତ୍ର | भूमिका |
| ସୁନ୍ଦରୀ | सुंदरी |
| ସ୍ୱାଧୀନତା | स्वाधीनता |
| ଖାଣ୍ଟିସତ | संपूर्ण सत्य |
| ନାଟ୍ୟକାର | नाट्यकार |
| ଅସଂଖ୍ୟ | हजारों, असंख्य |
| ଦୃଶ୍ୟସଜ୍ଜା | सज्जा |
| ଆଲୋକ ସଜ୍ଜା | प्रकाश-व्यवस्था |
| ନିଷ୍ଠାପର | निष्ठावंत |
| ଭବିଷ୍ୟତ | भविष्यत् |
| ଅନୁମାନ | अंदाज, अनुमान |
| ଯେଉଁମାନେ | जो |
| ସେଇ ପ୍ରକାର | उस प्रकार |
| ଅଭିନୟ | अभिनय |
| କୁଶଳତା | कुशलता |
| ଗୁଣ | स्वभाव |
| ମହତ୍ତ୍ୱ | महत्व |
| ଉପଦେଶ | उपदेश |
| ଉପକୃତ | उपकृत |
| ମୌଳିକତା | मौलिकता |
| ପରମ୍ପରା | परंपरा |
| ମୁକ୍ତ ରଙ୍ଗମଞ୍ଚ | खुला रंगमचं |
| ପୁରାତନ | पुरातन |

| | |
|---|---|
| ଯୁବ | **युवा** |
| କଳାକାର | **कलाकार** |
| ବଞ୍ଚାଇ ରଖିବା | **बचाए रखना** |
| ସ୍କୁଲ | **स्कूल** |
| ନବଯୁବକ | **नव युवक** |
| ପ୍ରଶିକ୍ଷଣ | **प्रशिक्षण** |
| ମହାନ୍ | **महान्** |
| ଶାରୀରିକ | **शारीरिक** |
| ବଳ | **बल** |
| ନିର୍ଦ୍ଦେଶନା | **निदेशन** |

ଅଭ୍ୟାସ

**अभ्यास**

**I.** ନିମ୍ନରେ ଦିଆଯାଇଥିବା ବାକ୍ୟଗୁଡ଼ିକୁ ପୁର୍ନଃଅଭ୍ୟାସ କରନ୍ତୁ ।
**(नीचे दिए गए वाक्य दोहराइए ।)**

1. ଆପଣଙ୍କ ସମୟର ନାଟକ ବିଷୟରେ ମତେ ଯଦି କିଛି କହନ୍ତେ ତେବେ ଭଲ ହୁଅନ୍ତା ।
2. ଆଜି କାଲିକା ପିଲାଙ୍କ ଦ୍ୱାରା ଯାତ୍ରା ହେବନି ।
3. ଯିଏ ଯେତେ ଭଲ ଗାଇ ପାରୁଥିଲା, ସିଏ ସେତେ ସୁନ୍ଦର ଭୂମିକାବି ପାଉଥିଲା ।
4. ଗତ ବର୍ଷ ଆମେ ଜନତା ଗଣନାଟ୍ୟ ଦ୍ୱାରା ତିନି ଦିନ ଧରି ଯାତ୍ରା କରେଇଥିଲୁ ।
5. ତାଙ୍କ ଯାତ୍ରା ଗୁଡ଼ିକ ଭିତରେ ମତେ "ରଙ୍ଗସଭା", "କର୍ଣ୍ଣବଧ" ଖୁବ୍ ଭଲଲାଗେ ।
6. ସେ 'କର୍ଣ୍ଣବଧ'ରେ ଦ୍ରୌପଦୀ ଚରିତ୍ରରେ ଅଭିନୟ କରି ଦର୍ଶକଙ୍କୁ କନ୍ଦେଇ ଦେଇଥିଲା ।
7. ଆପଣଙ୍କ ପରି ଯୁବ କଳାକାରମାନେ ଓଡ଼ିଆ ଯାତ୍ରାକୁ ବଞ୍ଚାଇ ରଖିବା ଉଚିତ୍ ।
8. ଆପଣମାନେ ହିଁ କଳାକାରମାନଙ୍କୁ ଠିକ୍ ରୂପେ ମାର୍ଗ ଦର୍ଶନ ଦେଇପାରିବେ ।
9. ଆପଣ ନାଟ୍ୟକଳା ଶିଖାଇବା ପାଇଁ ଗୋଟିଏ ସ୍କୁଲ ଖୋଲିପାରନ୍ତେ ତ ବହୁତ ଭଲହୁଅନ୍ତା ।
10. ବୟସ ତ ବଢ଼ିଗଲାଣି, ଶାରୀରିକ ବଳ ମଧ୍ୟ କମିଗଲାଣି ।

**II.** ବାକ୍ୟରେ ରେଖାଙ୍କିତ ଶବ୍ଦ ସ୍ଥାନରେ ଦିଆଯାଇଥିବା ଶବ୍ଦଗୁଡ଼ିକୁ ବ୍ୟବହାର କରି ନୂତନ ବାକ୍ୟ ଗଠନ କରନ୍ତୁ ।

**(वाक्यों में रेखांकित शव्दों के स्थान पर दिए गए शव्दों का प्रयोग कर नये वाक्य बनाइए।)**

1. ଆପଣ ନାଟକ ବିଷୟ଼ରେ ମତେ ଯଦି କିଛି କହନ୍ତେ, ତେବେ ଭଲ ହୁଅନ୍ତା ।

    ଟାକୁ
    ସେମାନଙ୍କୁ
    ପିଲାମାନଙ୍କୁ
    କଳାକାରମାନଙ୍କୁ
    ନାଟ୍ୟଶିଳ୍ପୀମାନଙ୍କୁ

2. ଆଜି କାଲିକା ପିଲାଙ୍କ ଦ୍ୱାରା ଯାତ୍ରା ହେବନି ।

    ପାଠ
    କିଛି
    କାମ
    ନାଟକ
    ଅଭିନୟ଼

3. ଗତ ବର୍ଷ ଆମେ ପିଲାମାନଙ୍କ ଦ୍ୱାରା ଯାତ୍ରା କରେଇଥିଲୁ ।

| | |
|---|---|
| ନର୍ତ୍ତକୀମାନଙ୍କ | ନାଚ |
| ଛାତ୍ରମାନଙ୍କ | ଡ୍ରାମା |
| ଶିଳ୍ପୀମାନଙ୍କ | ନାଟକ |
| ଝିଅମାନଙ୍କ | ପରୀକ୍ଷା |
| କବିମାନଙ୍କ | ସମ୍ମିଳନୀ |

4. ନାଟକ ଭିତରେ ମତେ ରଙ୍ଗସଭା ଭଲଲାଗେ ।

| | |
|---|---|
| ତୁମକୁ ନାଚ | |
| ସେମାନଙ୍କୁ | ଅଭିନୟ଼ |
| ତାଙ୍କୁ ଗୀତ | |
| ବାପାଙ୍କୁ | ଥଟ୍ଟା ତାମସା |
| ଲିଲିକୁ ଡାଇଲଗ୍ | |

5. <u>ସେ</u> ଅଭିନୟ କରି କନ୍ଦେଇ <u>ଦେଉଥିଲା</u> ।

| | |
|---|---|
| ତୁ | ଦେଉଥିଲୁ |
| ତୁମେ | ଦେଉଥିଲ |
| ସେମାନେ | ଦେଉଥିଲେ |
| ଆମେମାନେ | ଦେଉଥିଲୁ |
| ଆପଣମାନେ | ଦେଉଥିଲେ |

6. ଯୁବ <u>କଳାକାର</u> ମାନେ ଓଡ଼ିଆ <u>ଯାତ୍ରା</u> କୁ ବଞ୍ଚାଇ ରଖିବେ ।

| | |
|---|---|
| ନାଟ୍ୟକାର | ନାଟକ |
| ସାହିତ୍ୟିକ | ସାହିତ୍ୟ |
| କବି | କବିତା |
| ନୃତ୍ୟଶିଳ୍ପୀ | ନୃତ୍ୟଶୈଳୀ |
| ଗାୟକ | ସଙ୍ଗୀତ |

**III.** ଉଦାହରଣ ଅନୁଯାୟୀ ନିମ୍ନରେ ଦିଆ ଯାଇଥିବା ବାକ୍ୟଗୁଡ଼ିକୁ ଯୋଡ଼ି ଗୋଟିଏ ଗୋଟିଏ ବାକ୍ୟ ଗଠନ କରନ୍ତୁ ।

**(उदाहरण के अनुसार नीचे दिए गए वाक्य युग्मों को जोड़ कर एक एक वाक्य बनाइए।)**

ଉଦାହରଣ :- ଆପଣ ମୋ ଠାରୁ ଶୁଣିବାକୁ ଚାହାନ୍ତି ।
ମୁଁ କହିବି ।
ଯଦି ଆପଣ ମୋ ଠାରୁ ଶୁଣିବାକୁ ଚାହାନ୍ତି ତେବେ ମୁଁ କହିବି ।

1. ଆପଣ ପୁରୀ ଯାଆନ୍ତୁ ।
   ମୁଁ ପୁରୀ ଯାଆନ୍ତି ।

2. ସେ ଭାତ ଖାଆନ୍ତି ।
   ମୁଁ ଭାତ ଖାଇବି ।

3. ତୁମ ଘର କଥା ମତେ ଶୁଣାନ୍ତୁ ।
   ମୁଁ ଘର କଥା ଶୁଣାନ୍ତି ।

4. ତୁମେ ସ୍କୁଲକୁ ଯିବ ।
   ସେମାନେ ସ୍କୁଲକୁ ଯିବେ ।

5. ପିଲାମାନେ ପାଠ ପଢ଼ନ୍ତି
   ଭଲ ହେବ ।

**IV.** ଉଦାହରଣ ଅନୁଯାୟୀ ନିମ୍ନଲିଖିତ ବାକ୍ୟ ଗୁଡ଼ିକର ବାଚ୍ୟ ପରିବର୍ତ୍ତନ କରନ୍ତୁ ।

**(उहाहरण के अनुसार नीचे दिए गए वाक्यों का वाच्य परिवर्त्तन कीजिए।)**

ଉଦାହରଣ :- ଆଜି କାଲିକା ପିଲା ଯାତ୍ରା କରିବେ ।
ଆଜି କାଲିକା ପିଲାଙ୍କ ଦ୍ୱାରା ଯାତ୍ରା ହେବ ।

1. ମୋ ଝିଅ ନାଚ ଶିଖିବ ।
2. ସେମାନେ ପାଠ ପଢ଼ିବେ ।
3. ଜାହ୍ନବୀ ପିଠା କରିବ ।
4. ମଧୁ ଫୁଟବଲ୍ ଖେଳିବ ।
5. ଶୁଭଲକ୍ଷ୍ମୀ ଗୀତ ଗାଇବ ।
6. ପ୍ରତାପ ବାବୁ ନାଟକ ଲେଖିବେ ।

**V.** ଉଦାହରଣ ଅନୁଯାୟୀ ନିମ୍ନରେ ଦିଆଯାଇଥିବା ପ୍ରତ୍ୟେକ ବାକ୍ୟକୁ ଦୁଇ ଦୁଇଟି ବାକ୍ୟରେ ପରିଣତ କରନ୍ତୁ ।
**(उदाहरण के अनुसार नीचे दिए गए प्रत्येक वाक्य के दो दो वाक्य बनाइए ।)**

(1) ଉଦାହରଣ :- ଯିଏ ସଭାରେ ଭଲ ଗାଉଥିଲା ସିଏ ମୋର ସାଙ୍ଗ ଥିଲା ।
1. ଯିଏ ସଭାରେ ଭଲ ଗାଉଥିଲା ।
2. ସିଏ ମୋର ସାଙ୍ଗଥିଲା ।

1. ଯିଏ ଖାଉଥିଲା ସିଏ ମୋର ଭଉଣୀ ଥିଲା ।
2. ଯିଏ ବହି ଧରି ଆସୁଥିଲା ସିଏ ମୋର ସାଙ୍ଗ ଥିଲା ।
3. ଯିଏ ଭଲ ନାଚୁଥିଲା ସିଏ ରାମର ଭଉଣୀ ଥିଲା ।
4. ଯିଏ କଟକ ଯାଉଥିଲେ ସିଏ ମୋର ଅଜା ଥିଲେ ।
5. ଯିଏ ଜାନକୀକୁ ଡାକୁଥିଲେ ସିଏ ମୋର ବାପା ଥିଲେ ।

(2) ଉଦାହରଣ :- ଯେତେ ତୁମକୁ ଜଣା ସେତେ ଆମକୁ ମଧ୍ୟ ଜଣା ।
1. ତୁମକୁ ଜଣା ଅଛି ।
2. ମତେ ବି ଜଣା ଅଛି ।

1. ଯେତେ କାମ ମଧୁ କରିପାରିବ ସେତେ କାମ ମୁଁ ମଧ୍ୟ କରିପାରିବି ।
2. ଯେତେ ତୁମେ ଖାଇପାରିବ ସେତେ ମୁଁ ମଧ୍ୟ ଖାଇପାରିବି ।
3. ଯେତେ ଦୂର ତୁମେ ଯାଇପାରିବ ସେତେଦୂର ମୁଁ ମଧ୍ୟ ଯାଇପାରିବି ।
4. ଯେତେ ସମ୍ପତ୍ତି ମୋର ଥିଲା ସେତେ ସମ୍ପତ୍ତି ତାଙ୍କର ମଧ୍ୟ ଥିଲା ।
5. ଯେତେ ମୁଁ ପଢୁଥିଲି ସେତେ ସେ ମଧ୍ୟ ପଢୁଥିଲେ ।

(3) ଉଦାହରଣ :- ତୁ ଯେଉଁଠିକି ଯାଇଥିଲୁ ମୁଁ ବି ସେଠାକୁ ଯାଇଥିଲି ।
1. ତୁ ସେଠାକୁ ଯାଇଥିଲୁ ।
2. ମୁଁ ବି ସେଠାକୁ ଯାଇଥିଲି ।

1. ତୁ ଯେଉଁଠିକି ଖେଳିବାକୁ ଯାଇଥିଲୁ ମୁଁ ବି ସେଠାକୁ ଖେଳିବାକୁ ଯାଇଥିଲି।
2. ସେ ଯେଉଁଠିକି ପାଠ ପଢ଼ିବାକୁ ଯାଇଥିଲା ମୁଁ ସେଇଠିକି ପଢ଼େଇବାକୁ ଯାଇଥିଲି।
3. ତୁମେ ଯେଉଁଠିକି ଭାଷଣ ଶୁଣିବାକୁ ଯାଇଥିଲ ମୁଁ ବି ସେଇଠିକି ଶୁଣିବାକୁ ଯାଇଥିଲି।
4. ଆପଣ ଯେଉଁଠିକି ବୁଲିବାକୁ ଯାଇଥିଲେ ସେ ବି ସେଇଠିକି ବୁଲିବାକୁ ଯାଇଥିଲେ।
5. ସେମାନେ ଯେଉଁଠିକି ନାଚିବାକୁ ଯାଇଥିଲେ ସେ ବି ସେଇଠିକୁ ନାଚିବାକୁ ଯାଇଥିଲା।

(4) ଉଦାହରଣ :- ତୁ ମତେ ଯେଉଁ ପ୍ରକାର କହିଥିଲୁ ମୁଁ ସେଇ ପ୍ରକାର କଲି।

1. ତୁ ମତେ କହିଥିଲୁ।
2. ମୁଁ କଲି।

1. ରୀନା ମତେ ଯେଉଁ ପ୍ରକାର କହିଥିଲା ମୁଁ ସେଇ ପ୍ରକାର କଲି।
2. ତୁ ଯେଉଁ ପ୍ରକାର କର୍ମ କରିବୁ ତୁ ସେଇ ପ୍ରକାର ଫଳ ପାଇବୁ।
3. ତମେ ଯେଉଁ ପ୍ରକାର ଭାବୁଥିଲ ତମେ ସେଇ ପ୍ରକାର କଲ।
4. ଆପଣଙ୍କ ବାପା ମୋତେ ଯେଉଁ ପ୍ରକାର କହିଥିଲେ ମୁଁ ସେଇ ପ୍ରକାର କଲି।
5. ସେ ଯେଉଁ ପ୍ରକାର ଅଭିନୟ କଲା ମୁଁ ସେଇ ପ୍ରକାର ଅଭିନୟ କଲା।

(5) ଉଦାହରଣ :- ଯେତେବେଳେ ତୁମେ ନେଇକରି ଯିବ ସେତେବେଳେ ମୁଁ ଆସିବି।

1. ତୁମେ ନେଇକରି ଯିବ।
2. ମୁଁ ବି ଆସିବି।

1. ଯେତେବେଳେ ବୋଉ ମନ୍ଦିର ଯିବ ସେତେବେଳେ ମୁଁ ତା ସାଙ୍ଗରେ ଯିବି।
2. ଯେତେବେଳେ ତୁମେ ଡାକ୍ତର ହେବ ସେତେବେଳେ ତୁମେ ବି ରୋଗୀ ସେବା କରିବ।
3. ଯେତେବେଳେ ସେ ଛୋଟ ଥିଲା ସେତେବେଳେ ବହୁତ ଦୁଷ୍ଟ ଥିଲା।
4. ଯେତେବେଳେ ସ୍କୁଲ ଘଣ୍ଟା ବାଜିବ ସେତେବେଳେ ଆମର ଛୁଟି ହେବ।
5. ଯେତେବେଳେ ସେମାନେ ଖାଇବେ ସେତେବେଳେ ଆମେ ଖାଇବୁ।
6. ଯେତେବେଳେ ଶିକ୍ଷକ ଆସିବେ ସେତେବେଳେ ପିଲାମାନଙ୍କର ପାଠ ପଢ଼ା ଆରମ୍ଭ ହେବ।

(6) ଉଦାହରଣ :- ଯିଏ ଯେତେ ଭଲ ଗାଉଥିଲା, ସିଏ ସେତେ ପ୍ରଶଂସା ପାଉଥିଲା।

ସିଏ ଭଲ ଗୀତ ଗାଉଥିଲ।

ସିଏ ପ୍ରଶଂସା ପାଉଥିଲ।

1. ଯିଏ ଯେତେ ଭଲ ନାଟକ କରିବ, ସିଏ ସେତେ ସୁଯୋଗ ପାଇବ।
1. ଯିଏ ଯେତେ ନାଟକ ଲେଖିବ ସିଏ ସେତେ କବିତା ଲେଖିବ।
2. ଯିଏ ଯେତେ ପରିଶ୍ରମ କରିବ, ସିଏ ସେତେ ସଫଳତା ପାଇବ।
3. ଯିଏ ଯେତେ ଫୁଲ ତୋଳିବ, ସିଏ ସେତେ ମାଳ ଗୁନ୍ଥିବ।
4. ଯିଏ ଯେତେ ପାଠ ପଢ଼ିବ, ସିଏ ସେତେ ଫଳ ପାଇବ।

**VI.** ବନ୍ଧନୀ ମଧ୍ୟରୁ ଉପଯୁକ୍ତ ଶବ୍ଦ ବାଛି ବାକ୍ୟ ପୂରଣ କରନ୍ତୁ।
**(कोष्ठक में दिए गए शव्दों में से उपयुक्त शब्द चून कर वाक्य पूरे कीजिए।)**
(କରିବେ, ଭଲଲାଗେ, ଗଢ଼ିଥିଲେ, ଅପେକ୍ଷା କରିଥିଲି, ପ୍ରଂଶସା କଲେ)

1. ପିଲାମାନଙ୍କ ନାଟକ ଦେଖି ବିଜୟ୍ ବାବୁ ____।
2. ମତେ ସଞ୍ଜବେଳେ ବୁଲିବାକୁ ____।
3. କେଉଁ ଶିଳ୍ପୀ ଏ ମନ୍ଦିରକୁ _____ ?
4. ତୁମେ ଆସିବ ବୋଲି ମୁଁ ____।
5. ଛୋଟ ପିଲାମାନେ ଖେଳଣା ପାଇଁ ଅଳି _____।

**VII.** ବନ୍ଧନୀରେ ଦିଆ ଯାଇଥିବା ନିର୍ଦ୍ଦେଶ ଅନୁଯାୟୀ ବାକ୍ୟଗୁଡ଼ିକୁ ପରିବର୍ତ୍ତନ କରନ୍ତୁ।)
**(कोष्ठक में दिए गए निदेशों के अनुसार वाक्यों का परिवर्तन कीजिए।)**

1. ତୁମେ କଟକ ଯିବ। ('ଯଦି', 'ବି' ଲଗାଇ ବାକ୍ୟକୁ ଯୋଡ଼ନ୍ତୁ)
   ମୁଁ କଟକ ଯିବି।
2. ସବିତା ସୁନ୍ଦର ଗୀତ ଗାଇପାରେ। (ଯେମିତି, ସେମିତି ଲଗାଇ ବାକ୍ୟକୁ
   ସବିତା ସୁନ୍ଦର ନାଚ କରିପାରେ। ପରିବର୍ତ୍ତନ କରନ୍ତୁ)
3. ସେ ଅଙ୍କ କଷିବ। (କର୍ମ ବାଚ୍ୟ ବାକ୍ୟ କରନ୍ତୁ)
4. ପିଲାଟି ଶୋଇଛି। (ମା, ଚାକର ଶବ୍ଦ ପ୍ରୟୋଗ କରି ପ୍ରେରଣାର୍ଥକ ବାକ୍ୟରେ ପରିବର୍ତ୍ତନ କରନ୍ତୁ)

**IX.** 'କ' ଓ 'ଖ' ବର୍ଗର ଶବ୍ଦ ଗୁଡ଼ିକୁ ଉପଯୁକ୍ତ ରୀତିରେ ଯୋଡ଼ି ନିଜ ବାକ୍ୟରେ ପ୍ରୟୋଗ କରନ୍ତୁ।
**('क' ओर 'ख' वर्ग के शब्दों को उपयुक्त रीति में जोड़ कर अपने वाक्यों में प्रयोग कीजिए।)**

'କ' 'ଖ'

| | |
|---|---|
| ଦୁଃଖ | ଥିବ |
| ପ୍ରଶଂସା | ଲାଗିବ |
| କରି | କରିବ |
| ଦେଇ | ଦେବ |
| ଥୋଇ | ଯିବ |

## ପଢ଼ନ୍ତୁ ଓ ବୁଝନ୍ତୁ

### ଗଣକବି ବୈଷ୍ଣବ ପାଣି

### **गणकबि बैष्णब पाणि**

ସାହିତ୍ୟ ହେଉଛି ଜୀବନ ପାଇଁ ଶ୍ରେଷ୍ଠ ଚାରୁକଳା। ଆଉ ଏଇ ସାହିତ୍ୟ ଜଗତରେ ନାଟକ ବା ଯାତ୍ରା ହିଁ ବିଶେଷ ପ୍ରଭାବଶାଳୀ। ଏହା ବିଶେଷ ପ୍ରଭାବଶାଳୀ ହେଲେ ମଧ୍ୟ ଏହା କେବଳ ଶ୍ରାବ୍ୟ ନୁହେଁ, ଦୃଶ୍ୟ ମଧ୍ୟ। ଏହାକୁ ପଞ୍ଚମ ବେଦ ରୂପରେ ସ୍ୱୀକାର କରାଯାଇଛି। ମନୁଷ୍ୟ ଏହାକୁ ମନୋରଂଜନ ପାଇଁ ଗ୍ରହଣ କରିନାହିଁ, ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କ ପାଇଁ ଏହା ଏହା ଏକ ବଳିଷ୍ଠ ମାଧ୍ୟମ। ଯାତ୍ରାରେ ସଂସ୍କୃତିର ପ୍ରକୃଷ୍ଟ ପ୍ରତିଫଳନ ଘଟିଥାଏ। ସାମାଜିକ ରୁଚିର ପରିବର୍ତ୍ତନ ଘଟିଲେ ଯାତ୍ରା ତା'ର ଗତି ପରିବର୍ତ୍ତନ କରିଥାଏ। ନାଟ୍ୟକାର ସମାଜ ତଥା ସମାଜସ୍ଥିତି ଓ ଦର୍ଶକମାନଙ୍କୁ ଚାହିଁ ତା'ର ଲେଖନୀର ଦିଗ ପରିବର୍ତ୍ତନ କରେ। ଏକ ସମାଜ ସଚେତନ ଶିଳ୍ପୀ ବାସ୍ତବ ସମସ୍ୟାକୁ ଉପଲ୍‌ବଧ କରି ନାଟକ ମାଧ୍ୟମରେ ଏହାକୁ ପ୍ରକାଶ କରିଥାଏ।

ଓଡ଼ିଶାର ଯାତ୍ରା କହିଲେ ଆମେ ବୈଷ୍ଣବ ପାଣିଙ୍କ ନାମ ସ୍ମରଣ କରୁ। ସେ ବିଂଶ ଶତାବ୍ଦୀର ଜଣେ ପ୍ରସିଦ୍ଧ କବି ତଥା ନାଟ୍ୟକାର। କଟକ ଜିଲ୍ଲାର 'କୋଟପଦା' ଗ୍ରାମରେ ସେ ଜନ୍ମ ଗ୍ରହଣ କରିଥିଲେ। ସେ ପ୍ରଥମେ କବିତା ଲେଖୁଲେଖୁ ପରେ ନାଟକ ଲେଖାରେ ମନୋନିବେଶ କଲେ। ଗୀତି ନାଟ୍ୟ ଲେଖିକରି ସେ ଓଡ଼ିଆ ନାଟ୍ୟ ସାହିତ୍ୟକୁ ସମୃଦ୍ଧ କରିଛନ୍ତି। ସେ ଯେମିତି ସୁନ୍ଦର ଗୀତି କବିତା ଲେଖି ପାରୁଥିଲେ, ସେମିତି ସୁନ୍ଦର ଗୀତିନାଟ୍ୟ ମଧ୍ୟ ଲେଖିବାକୁ ଭଲ ପାଉଥିଲେ। ତାଙ୍କର ସୃଷ୍ଟି ସକଳ ମଧ୍ୟରେ ସମାଜର ବିଭିନ୍ନ ସମସ୍ୟା ଯେଉଁଭଳି ଭାବରେ ପ୍ରତିଫଳିତ ହୋଇପାରିଛି ତାହା ଅଦ୍ୱିତୀୟ। ଏବେ ମଧ୍ୟ ବୈଷ୍ଣବ ପାଣିଙ୍କ ଦ୍ୱାରା ରଚିତ ଗୀତିନାଟ୍ୟ ଗାଁ ଗାଁରେ ଅଭିନୀତ ହୁଏ।

ଗୀତିନାଟ୍ୟ ସ୍ରଷ୍ଟା ହିସାବରେ ସେ ଅଜାତଶତ୍ରୁ। ବିଶେଷତଃ ଦୃଢ଼ କଣ୍ଠରେ ସମାଜର

ବିଭିନ୍ନ ସମସ୍ୟା ସଂପର୍କରେ ଆଲୋଚନା କରିବାଲାଗି ସେ ଶ୍ରେୟସ୍କର ମଣିଛନ୍ତି । ଗଣକବି ବୈଷ୍ଣବ ପାଣି ବିଲାତି ପୋଷାକ ଓ ଚଳଣୀକୁ କେବଳ ଘୃଣା କରିନାହାନ୍ତି ସ୍ୱଦେଶୀ ପଦାର୍ଥର ଜନସମାଜରେ ଆଗ୍ରହ ବୃଦ୍ଧି ଲାଗି 'ମହିଷାସୁର ବଧ' ଗୀତାଭିନୟରେ କାଳଘଣ୍ଟ ମୁଖରେ କହିଛନ୍ତି । ସମାଜରେ ଭରି ରହିଥିବା ଟାଉଟର ଶ୍ରେଣୀର ଲୋକମାନଙ୍କୁ ମଧ୍ୟ ସେ ତାଙ୍କ ନାଟକ ମାଧ୍ୟମରେ ସମାଜକୁ ଦେଖେଇ ଦେଇପାରିଛନ୍ତି ।

ଗଣକବି ତତ୍କାଳୀନ ସମାଜରେ ଏକତା ତଥା ପରସ୍ପର ମଧ୍ୟରେ ବୁଝାମଣାର ଅଭାବ ଲକ୍ଷ୍ୟ କରିଛନ୍ତି । ଲୋକମାନଙ୍କ ମଧ୍ୟରେ ଏକତା ରକ୍ଷା କରିବା ଲାଗି ସେ ଆହ୍ୱାନ ଦେଇଛନ୍ତି । ବୈଷ୍ଣବ ପାଣି ଜଣେ ବ୍ରାହ୍ମଣ ହୋଇ ମଧ୍ୟ ହରିଜନ ମହିଳାଙ୍କୁ ବିବାହ କରିଥିଲେ । ସମାଜର କୁସଂସ୍କାର ଓ ଅନ୍ଧବିଶ୍ୱାସ ବିରୁଦ୍ଧରେ ସେ ସ୍ୱର ଉଠାଉଥିଲେ । ସେଥିପାଇଁ ବୈଷ୍ଣବ ପାଣିଙ୍କୁ ଗଣକବି କୁହାଯାଏ । ଓଡ଼ିଶାରେ ଗଣକବି ଜୟନ୍ତୀ ଖୁବ୍ ଉତ୍ସାହର ସହିତ ପାଳନ କରାଯାଏ ।

## शब्दार्थ

| ओड़िआ शब्द | हिंदी अर्थ |
|---|---|
| ଗଣକବି | जनसामान्य/जनसाधारण के कवि |
| ବୈଷ୍ଣବ ପାଣି | ओडिआ के एक कवि तथा नाटककार का नाम। वैष्णव पाणि को 'गणकवि' कहते हैं। |
| ଶ୍ରେଷ୍ଠ ଚାରୁକଳା | श्रेष्ठ कला |
| ପଞ୍ଚମ ବେଦ | पाँचवाँ वेद |
| ପ୍ରକୃଷ୍ଟ ପ୍ରତିଫଳନ | ठीक तरह का प्रतिफलन |
| ବିଂଶ ଶତାବ୍ଦୀ | बीसवीं शताब्दी |
| ପ୍ରସିଦ୍ଧି | प्रसिद्ध |
| କବି | कवि |
| ନାଟ୍ୟକାର | नाट्यकार |
| ମନୋନିବେଶ | मन को एक काम में प्रवेश कराना (मनोनिवेश करना) |
| ଜନ୍ମଗ୍ରହଣ | जन्म लेना |
| ସୁନ୍ଦର | सुंदर |
| ଗୀତିକବିତା | गीति कविता |

| | |
|---|---|
| ଗୀତିନାଟ୍ୟ | **गीति नाट्य** |
| ସ୍ରଷ୍ଟା | **सृष्टि कर्त्ता** |
| ଅଭିନୀତ | **अभिनय** |
| ଶ୍ରେୟସ୍କର | **श्रेष्ठ** |
| ବିଲାତି ପୋଷାକ | **विदेशी के पोशाक** |
| ପୌରାଣିକ | **पौराणिक** |
| କଥାବସ୍ତୁ | **कथावस्तु** |
| ଘୃଣା | **घृणा** |
| ବ୍ୟତୀତ | **के सिवा** |
| ବ୍ରାହ୍ମଣ | **ब्राह्नण** |
| ହରିଜନ | **हरिजन** |
| ମହିଳା | **औरत, महिला** |
| କୁସଂସ୍କାର | **कुसंस्कार** |
| ଅନ୍ଧବିଶ୍ୱାସ | **अंधविश्वास** |
| ବୁଝାମଣାର ଅଭାବ | **समझदारी का अभाव** |
| ଏକତା ରକ୍ଷା କରିବା | **एकत्व की रक्षा करना** |
| ଜୟନ୍ତୀ | **जयंती** |
| ଉତ୍ସାହ | **उत्साह** |

## अभ्यास

**I.** ଅନୁଚ୍ଛେଦର ଆଧାର ଉପରେ ନିମ୍ନରେ ଦିଆଯାଇଥିବା ପ୍ରଶ୍ନର ଉତ୍ତର ଦିଅନ୍ତୁ।
**(अनुच्छेद के आधार पर नीचे दिए गए प्रश्नों के उत्तर दीजिए)**

1. ଯାତ୍ରା କହିଲେ ଆମେ କ'ଣ ବୁଝୁ ?
2. ବୈଷ୍ଣବ ପାଣି କିଏ ?
3. ସେ କେଉଁ ଶତାବ୍ଦୀର କବି ?
4. ସେ କେଉଁଠି ଜନ୍ମଗ୍ରହଣ କରିଥିଲେ ?
5. ବୈଷ୍ଣବ ପାଣି ଜାତିରେ କ'ଣ ଥିଲେ ?
6. ବୈଷ୍ଣବ ପାଣିଙ୍କୁ 'ଗଣକବି' କାହିଁକି କୁହାଯାଏ ?

7. ସେ କାହା ବିରୁଦ୍ଧରେ ସ୍ୱର ଉଠାଉଥିଲେ ?
8. ଓଡ଼ିଶାରେ ଗଣକବି ଜୟନ୍ତୀ କ'ଣ ପାଇଁ ଉତ୍ସାହର ସହ ପାଳନ କରାଯାଏ ?

**II.** ପ୍ରତ୍ୟେକ ଶବ୍ଦ ସମୂହରେ ଦିଆଯାଇଥିବା ଶବ୍ଦଗୁଡ଼ିକୁ ଠିକ୍ କ୍ରମରେ ରଖି ବାକ୍ୟ ଗଠନ କରନ୍ତୁ ।

**(प्रत्येक शब्द समूह में दिए गए शब्दों को सही क्रम में लाकर वाक्य बनाइए।)**

1. ତାର ଗତି, ରୁଚିର ପରିବର୍ତ୍ତନ, ସାମାଜିକ, ନାଟକ, ପରିବର୍ତ୍ତନ, ଘଟିଲେ, କରିଥାଏ
2. ପ୍ରକାଶ କରିଥାଏ, ଏକ ସମାଜ, ବାସ୍ତବ ସମସ୍ୟାକୁ, ସଚେତନ ଶିଳ୍ପୀ, ନାଟକ ମାଧ୍ୟମରେ, ଉପଲବ୍ଧି କରି, ଏହାକୁ
3. ଯାତ୍ରା, ଓଡ଼ିଶାରେ, ଆମେ, ସ୍ମରଣ କରୁ, ବୈଷ୍ଣବ ପାଣିଙ୍କ, ନାମ, କହିଲେ
4. କବିତା, ପରେ, ମନୋନିବେଶ, କଲେ, ଲେଖୁଲେଖୁ, ସେ ପ୍ରଥମେ, ନାଟକ ଲେଖାରେ
5. ସେମିତି, ଲେଖିପାରୁଥିଲେ, ସେ, ମଧ୍ୟ, ସୁନ୍ଦର, ଗୀତି କବିତା, ଯେମିତି, ସୁନ୍ଦର, ଲେଖିବାକୁ, ଗୀତିନାଟ୍ୟ ଭଲପାଉଥିଲେ
6. ସହିତ, ଉତ୍ସାହର, ପାଳନ କରାଯାଏ, ଗଣକବି ଜୟନ୍ତୀ, ଖୁବ୍, ଓଡ଼ିଶାରେ

**III.** 'କ' ସ୍ତମ୍ଭର ଶବ୍ଦ ସହ ସମ୍ପର୍କ ଥିବା 'ଖ' ସ୍ତମ୍ଭର ଶବ୍ଦ ବାଛନ୍ତୁ ।

**('क' तथा 'ख' वर्गों के शब्दों का सही मिलान कर वाक्यों में प्रयोग कीजिए।)**

| 'କ' | 'ଖ' |
|---|---|
| ଗଣ | ସାହିତ୍ୟ |
| ବୈଷ୍ଣବ | ଜିଲ୍ଲା |
| କଥା | ନାଟ୍ୟ |
| ଗୀତି | କବି |
| କଟକ | ପାଣି |
| ନାଟ୍ୟ | ବିଶ୍ୱାସ |
| ଅନ୍ଧ | ଜନ |
| ହରି | ବସ୍ତୁ |

**IV.** ହିନ୍ଦୀରେ ଅନୁବାଦ କରନ୍ତୁ ।

**(हिंदी में अनुवाद कीजिए।)**

ସାଧାରଣତଃ ଫାଲ୍‌ଗୁନ ମାସ ଶୁକ୍ଳପକ୍ଷ ଦଶମୀ ତିଥିଠାରୁ ଦୋଳଯାତ୍ରା ଆରମ୍ଭ ହୋଇଥାଏ। ଏହି ପର୍ବର ମୁଖ୍ୟ ଆରାଧ୍ୟ ଠାକୁର ରାଧା ଓ କୃଷ୍ଣ। ତାଙ୍କ ନିକଟରେ ଏହି ଦିନଠାରୁ ଅବିର ଅର୍ପଣ କରାଯାଇଥାଏ। ସେତେବେଳେ ଗୋପୀମାନେ ଶ୍ରୀକୃଷ୍ଣଙ୍କୁ ଫୁଲହାରରେ ମଣ୍ଡନ କରୁଥିଲେ, ଦୋଳିରେ ଝୁଲାଉ ଥିଲେ ଏବଂ ତାଙ୍କ ସହ ଫଗୁ ଖେଳି ଆମୋଦ ପ୍ରମୋଦରେ ମଗ୍ନ ରହୁଥିଲେ। ତେଣୁ ଦୋଳଯାତ୍ରା ଅବସରରେ ରାଧାକୃଷ୍ଣଙ୍କ ଯୁଗଳ ମୂର୍ତ୍ତି ଛୋଟ ଛୋଟ ବିମାନରେ ଚିତ୍ତାକର୍ଷକ ସାଜ ସଜ୍ଜା ସହିତ ମହାଆଡ଼ମ୍ବର ସହକାରେ ଗ୍ରାମର ପ୍ରତ୍ୟେକଙ୍କ ଘରକୁ ନିଆଯାଇଥାଏ। ପ୍ରତ୍ୟେକଙ୍କ ଦ୍ୱାରରେ ଠାକୁରଙ୍କୁ ଭୋଗ ଅର୍ପଣ କରାଯିବା ସଙ୍ଗେ ସଙ୍ଗେ ପୁରୋହିତଙ୍କୁ ମଧ୍ୟ ଦକ୍ଷିଣା ଦିଆଯାଇଥାଏ। ଠାକୁରମାନଙ୍କ ଉଦ୍ଦେଶ୍ୟରେ ପ୍ରତ୍ୟେକ ଦ୍ୱାରରେ ଅର୍ପିତ ଭୋଗକୁ 'ଦ୍ୱାରଭୋଗ' କୁହାଯାଇଥାଏ। ସେହିଦିନ ଯୁଆଡ଼େ ଦେଖ ସିଆଡ଼େ ରାଧାକୃଷ୍ଣଙ୍କ ଚଳନ୍ତି ପ୍ରତିମା ଆଉ ବିମାନରେ ମଧ୍ୟ ଭକ୍ତମାନେ ବୁଲାଉଥା'ନ୍ତି। ଯେଉଁଠି ପ୍ରଭୁ ସେଇଠି ଭକ୍ତଙ୍କର ସମାବେଶ। ସେଇଠି ଭକ୍ତମାନେ ପ୍ରଭୁଙ୍କ ପୀଠସ୍ଥଳୀରେ ନୈବେଦ୍ୟ ଅର୍ପଣ କରୁଥାନ୍ତି।

'ରଥଯାତ୍ରା' ବେଳେ ଯେପରି ଜଗତର ନାଥ ଜଗନ୍ନାଥ ନିଜ ସିଂହାସନରୁ ଓହ୍ଲାଇ ଆସନ୍ତି ଭକ୍ତବୃନ୍ଦଙ୍କୁ ଦର୍ଶନ ଦେବାପାଇଁ ଆଉ ସେମିତି ଶ୍ରୀକୃଷ୍ଣ ଭକ୍ତମାନଙ୍କଠାରୁ ଭୋଗ ନେବାପାଇଁ ଦୋଳଉତ୍ସବ ବେଳେ ଚାଲି ଆସିଥାନ୍ତି ଭକ୍ତଙ୍କ ପାଖକୁ। ସାଧାରଣତଃ ଗାଁରେ ଥିବା ରାଧାକୃଷ୍ଣଙ୍କ ମନ୍ଦିରର ଆଗ୍ନେୟ ଦିଗରେ ଅଇଘରା ବା ଅଗ୍ନିପୂଜା ପାଇଁ ପ୍ରସ୍ତୁତି କରାଯାଇଥାଏ। ଅଇଘରା ପାଇଁ ଜାଳେଣୀ ସାମଗ୍ରୀ ସବୁ ଏକାଠି କରି ଏକ କୁଡ଼ିଆ ଘର ଭଳି ସଜ୍ଜିତ କରାଯାଇଥାଏ, ଯେମିତି ସେଇ ଘର ଭିତରେ ଗୋଟିଏ ମେଣ୍ଢା ରହିପାରିବ। କାରଣ ମେଣ୍ଢା ଅଗ୍ନିଙ୍କ ବାହନ। ପ୍ରାୟ ସବୁ ସ୍ଥାନରେ ବିଭିନ୍ନ ପ୍ରକାର ଖାଦ୍ୟ ପଦାର୍ଥରେ ନିର୍ମିତ ଗୋଟିଏ ମେଣ୍ଢାର ପ୍ରତିକୃତି ରହିବାବେଳେ ଆଉ କେତେକ ସ୍ଥାନରେ ସେଇ ପ୍ରତିକୃତି ସହିତ ସତକୁ ସତ ଏକ ଜୀବନ୍ତ ମେଣ୍ଢାକୁ ତାରି ଭିତରେ ରଖି ଦିଆଯାଇଥାଏ। ଠାକୁର ବିମାନରେ ନଗର ପରିକ୍ରମା ସାରି, ଦ୍ୱାରଭୋଗ ଗ୍ରହଣ କରିସାରିବା ପରେ ଯେତେବେଳେ ମନ୍ଦିର ନିକଟକୁ ଫେରି ଆସିଥାନ୍ତି ସେତେବେଳେ ଅଇଘରାରେ ଅଗ୍ନି ସଂଯୋଗ କରାଯାଇଥାଏ। କୁଡ଼ିଆ ଆକୃତିର କାଠଗଦା ଉପରେ ଅଗ୍ନି ସଂଯୋଗ ହେବାପରେ ଜୀବନ୍ତ ମେଣ୍ଢାଟି ତାରି ଭିତରୁ ବାହାରକୁ ଖସି ଆସିଥାଏ। ତାରି ପ୍ରତିକୃତିଟି ସେଇ ଅଗ୍ନି ମଧ୍ୟରେ ରହି ଯାଇଥାଏ। ତାହାହିଁ ଅଇଘର। ସେଇ ନିକଟରେ ଠାକରଙ୍କୁ ପୂଜା ଅର୍ଚ୍ଚନା କରାଯିବାପରେ ଅଇଘରାର ଚତୁଃପାର୍ଶ୍ୱରେ ଠାକୁରଙ୍କୁ ବିମାନ ସହିତ ସାତଥର ପରିଭ୍ରମଣ କରାଯାଇଥାଏ।

ଦୋଳପୂର୍ଣ୍ଣିମୀ ଦିନ ସାଧରଣତଃ ଠାକୁରମାନଙ୍କୁ ମନ୍ଦିରର ଦକ୍ଷିଣ ପୂର୍ବ ଦିଗରେ ଥିବା ଏକ ମଣ୍ଡପକୁ ନିଆଯାଇଥାଏ। ସେହି ମଣ୍ଡପର ନାମ ଦୋଳମଣ୍ଡପ। ସେଠାରେ ପୂଜା ଅର୍ଚ୍ଚନା

କରାଯିବା ସଙ୍ଗେ ସଙ୍ଗେ ଠାକୁରମାନେ ଦୋଳି ଖେଳନ୍ତି ଓ ସେଠାରେ ନାଲି ଅବିର ଅର୍ପଣ କରାଯାଇଥାଏ । ପ୍ରତିଦିନ ଭିନ୍ନ ଭିନ୍ନ ଗ୍ରାମରେ ଠାକୁରମାନଙ୍କୁ ମେଳଣ ପଡ଼ିଆକୁ ନିଆଯିବା ବେଳର ଦୃଶ୍ୟ ଅତି ଚମତ୍କାର ଓ ଚିତାକର୍ଷକ । ପାଟ ପଟୁଆର, ରୋଷଣୀ, ନାଚତାମସା, ବାଦ୍ୟ ସଂଗୀତ ଓ ଖୋଳ କୀର୍ତ୍ତନ ସମେତ ଠାକୁରଙ୍କ ବିମାନଗୁଡ଼ିକର ସାଜସଜ୍ଜା କରାଯାଇଥାଏ । ଓଡ଼ିଶାର ପ୍ରତ୍ୟେକ ଜିଲ୍ଲାରେ ଏହା ସମାରୋହରେ ପାଳିତ ହୋଇଥାଏ ।

**V.** ଓଡ଼ିଆରେ ଅନୁବାଦ କର ।

**(ओड़िआ में अनुवाद कीजिए।**

**यदि हेमंत छुट्टियों में घर आता तो अच्छा होता। मैं ने उसके साथी के हाथ भिजवाया गया उसका पत्र पढ़ा। ज्ञात हुआ कि उसे एक प्रतियोगिता में भाग लेने से रोका गया है। उस के साथी ने बताया कि यह काम तो किसी भी विद्यार्थी से करवाया जा सकता था। मैं सदैव उस की याद करता हूँ। जब वह घर में नहीं होता, तब घर सूना लगता है। मेरी पत्नी भी उस की याद में सोते सोते चौंक पड़ती हैं। आज प्रतियोगिता का युग है। बच्चों को इस दौड़ में आगे बढ़ने की भावना को बढ़ावादेना होगा। माँ-बाप से जो बन पड़ता है वे करते हैं। बच्चों में सहन करने की आदत डालनी ही पड़ेगी। दुनियाँ में माँ-बाप ही ऐसे होते हैं जो बच्चों को अपने से उच्चतर पदवी पर पहुँचने की इच्छा रखते हैं। कभी कभी भाई-बहन, रिश्तेदारों में से भी किसी की प्रगति नहीं सहन हो पाती। माँ-बाप जैसा हितैषी संसार में कोई और नहीं। लेकिन यह भी सोचने की बात है कि प्रतियोगिता की कुछ सीमा होती है या नहीं। सब के ऊपर चढने की लालच में मानविकता को भी बनाए रखना चाहिए। प्रतियोगिता के युग में भी मानव को मानव ही रहने की ज़रूरत है। यदि हम मानविकता खो बैठेंगे तो अस्तित्व का कोई अर्थ ही नहीं होता।**

**VI.** ଆପଣ ଦେଖିଥିବା କୌଣସି ଏକ ନାଟକ ବିଷୟରେ ଏକ ଛୋଟ ଅନୁଚ୍ଛେଦ ଲେଖନ୍ତୁ ।

**(आप के द्वारा देखे हुए किसी नाटक के बारे में एक अनुच्छेद लिखिए।)**

# शब्दसूची

| ओड़िआ | पाठ नं | हिंदी |
|---|---|---|
| ଅଗଣିତ (वि.) | 17 (ख) | जो गिने नहीं जा सक्ते |
| ଅଛି (क्रि.) | 2 (क) | है |
| ଅଞ୍ଚଳ (सं.) | 12 (क) | आँचल |
| ଅଜଣା (वि.) | 14 (ख) | अज्ञात, अनजाने |
| ଅର୍ଜନ (क्रि.) | 15 (क) | कमाना |
| ଅଜା (सं.) | 14 (क) | नाना |
| ଅଟକିବା (क्रि.) | 20 (ख) | रुकना, अटक |
| ଅଟେ (क्रि.) | 14 (क) | है |
| ଅଣ୍ଟା (सं.) | 4 (क) | कमर |
| ଅଣ୍ଡିରା (କୁକୁର) (वि.) | 14 (क) | कुत्ता |
| ଅତିକମରେ (क्रि.वि.) | 7 (क) | कमसे कम |
| ଅତି (क्रि.वि.) | 2 (ख) | ज्यादा |
| ଅତିଥି (सं.) | 10 (ख) | अतिथि, मेहमान |
| ଅତିବାହିତ (वि.) | 11 (ख) | अतिवाहित |
| ଅନ୍ତରାୟ (सं.) | 11 (ख) | बाधा, बिघ्न |
| ଅନ୍ଧ (सं/वि.) | 16 ख) | अंधा, नेत्रहीन |
| ଅନ୍ଧବିଶ୍ୱାସ (सं.) | 24 (ख) | अंधविश्वास |
| ଅନ୍ଧାର (सं.) | 4 (ख) | अंधेरा |
| ଅନତିଦୂର (क्रि.वि.) | 20 (ख) | समीप |
| ଅନନ୍ୟ ସାଧାରଣ (वि.) | 18 (ख) | अनन्य, असाधारण |
| ଅନାଟନ (सं.) | 11 (ख) | अभाव |
| ଅନ୍ୟାୟ (वि.) | 12 (क) | अन्याय |

| | | |
|---|---|---|
| ଅନିନ୍ଦ୍ୟ (वि.) | **20 (ख)** | **परम, अत्याधीक** |
| ଅନୁକରଣ (क्रि.) | **15 ख)** | **अनुसरण, अनुगमन** |
| ଅନୁଚିତ (वि.) | **5 (ख)** | **अनुचित, उचित नहीं** |
| ଅନୁବାଦ (सं.) | **2 (क)** | **अनुवाद** |
| ଅନୁମାନ (सं.) | **24 (क)** | **अनुमान, अंदाज** |
| ଅନୁଶାସନ (सं.) | **9 (क)** | **आदेश / अनुशासन** |
| ଅନୁଷ୍ଠିତ (क्रि.) | **22 (ख)** | **संपन्न** |
| ଅପରାଧ (सं.) | **11 (क)** | **अपराध, जुर्म** |
| ଅପରିହାର୍ଯ୍ୟତା (सं.) | **18 (क)** | **अपरिहार्यता** |
| ଅପା (सं.) | **1 (क)** | **दीदी, बड़ी बहन** |
| ଅପାଠୁଆ (वि.) | **16 (क)** | **अनपढ़** |
| ଅପୂର୍ବ (वि.) | **18 (ख)** | **अपूर्व** |
| ଅପେକ୍ଷା (क्रि.) | **11 (क)** | **इंतजार** |
| ଅଫିସ୍ (सं.) | **22 (क)** | **ऑफिस** |
| ଅର୍ଜନ (क्रि.) | **15 (क)** | **कमाना** |
| ଅବସର (सं.) | **13 (क)** | **अवकाश, सेवानिवृति** |
| ଅବସ୍ଥାନ (सं.) | **19 (ख)** | **अवस्थान** |
| ଅବଶ୍ୟ (वि.) | **10 (क)** | **अवश्य** |
| ଅବୁଝା (वि.) | **12 (क)** | **ना समझ** |
| ଅଭାବ (सं.) | **11 (ख)** | **अभाव, कमी** |
| ଅଭିଜ୍ଞ (वि.) | **21 (क)** | **अभिज्ञ, अनुभवी** |
| ଅଭିନୟ (सं.) | **4 (क)** | **अभिनय, ओड़िशी नृत्य का शेष भाग** |
| ଅଭିନୀତ (सं.) | **24 (ख)** | **अभिनय** |
| ଅଭିଯୋଗ (सं.) | **21 (क)** | **शिकायत** |
| ଅଭିଳାଷ (सं.) | **20 (ख)** | **अभिलाषा, इच्छा** |

| | | |
|---|---|---|
| ଅମର (वि.) | 15 (क) | अमर |
| ଅଳ୍ପ (क्रि.वि.) | 3 (क) | थोड़ा |
| ଅଂଶ (सं.) | 16 (ख) | अंश, भाग, हिस्सा |
| ଅଶ୍ୱତ୍ଥ (सं.) | 12 (क) | पीपल, अश्वत्थ |
| ଅଶୀ (सं.) | 18 (क) | तलवार |
| ଅଶେଷ (वि.) | 18 (क) | विशेष |
| ଅସଂଖ୍ୟ (वि.) | 24 (क) | हजारों, असंख्य |
| ଅସ୍ତ (सं.) | 18 (ख) | अस्त |
| ଅସ୍ତପ୍ରାୟ (वि.) | 18 (ख) | अस्तप्राय, डुबताहुआ |
| ଅସମୀୟା (सं./वि) | 2 (क) | असमिया |
| ଅସ୍ତମିତ (सं.) | 18 (ख) | अस्तमित, सूर्यास्त |
| ଅସୁବିଧା (सं.) | 8 (क) | तकलिफ् |
| ଅସ୍ପୃଶ୍ୟତା (सं.) | 17 (ख) | अस्पृश्यता |
| ଅହିଂସା (सं.) | 7 (ख) | अहिंसा |
| ଅହେତୁକ (वि.) | 11 (ख) | ज्यादा, अकारण |
| ଅକ୍ଷର (सं.) | 16 (ख) | अक्षर |
| ଅଲିଅଳ (वि.) | 20 (ख) | अतिप्रिय, लाड़ला |
| ଆଈ (सं.) | 14 (क) | नानी |
| ଆଉ (अ.) | 1 (क) | और |
| ଆକାଶ (सं.) | 4 (ख) | आकाश, आसमान |
| ଆକାଂକ୍ଷା (सं.) | 20 (ख) | आकांक्षा, इच्छा |
| ଆକୃଷ୍ଟ (क्रि.) | 19 (ख) | आकर्षण |
| ଆଖିଦଉଥିବୁ (क्रि.) | 8 (क) | देखते रहना, निगरानी करना |
| ଆଗ (क्रि.वि.) | 11 (ख) | आगे, सामने |
| ଆଗାମୀ (क्रि.वि.) | 11 (ख) | आनेवाला |
| ଆଜ୍ଞା (सं.) | 2 (क) | जी |

| | | |
|---|---|---|
| ଆତ୍ମୀୟ (सं.) | 17 (ख) | निजश्व |
| ଆଜି (क्रि.वि.) | 3 (क) | आज |
| ଆଜିକାଲି (क्रि.वि.) | 2 (क) | आजकल |
| ଆଉ (क्रि.वि./अव्यय) | 12 (क) | और |
| ଆଣିବା (क्रि.) | 1 (क) | लाना |
| ଆଦର (सं.) | 6 (ख) | आदर |
| ଆଦି (वि.) | 15 (ख) | पूरातन |
| ଆନ୍ଦୋଳନ (सं.) | 15 (ख) | आन्दोलन |
| ଆଧୁନିକ (सं.) | 2 (ख) | आधुनिक |
| ଆପଣ (सर्व.) | 1 (क) | आप |
| ଆନନ୍ଦ (सं.) | 10 (ख) | आनंद |
| ଆବେଦନ (सं.) | 21 (ख) | आवेदन |
| ଆମ (सर्व.) | 1 (क) | हम |
| ଆମିଷ (सं./वि.) | 10 (ख) | आमिष |
| ଆର (क्रि.वि.) | 10 (क) | अगला |
| ଆରମ୍ଭ (सं.) | 1 (क) | शुरु, आरंभ |
| ଆରିଷା ପିଠା (सं.) | 9 (ख) | एक प्रकार का खाद्य (पाठ देखिए) |
| ଆଳୁ (सं.) | 9 (ख) | आलू |
| ଆସିବା (क्रि.) | 1 (क) | आना |
| ଆସନ୍ତା (वि.) | 1 (क) | अगला |
| ଆର୍ଶୀବାଦ (सं.) | 4 (ख) | आशीर्वाद |
| ଆଶଂକା (सं.) | 20 (ख) | आशंका, भय |
| ଆଷାଢ଼ (सं.) | 19 (क) | आषाढ़ (महीना) |
| ଆହ୍ୱାନ (सं.) | 15 (ख) | आह्वान, आवाहन |
| ଆଲୁଅ (सं.) | 22 (क) | आलोक, प्रकाश |
| ଆଲୋକପାତ (सं.) | 24 (ख) | आलोकपात |

| | | |
|---|---|---|
| ଆଲୋକସଜ୍ଜା (सं.) | 24 (क) | प्रकाश व्यवस्था |
| ଇଏ (सर्व.) | 1 (क) | ये |
| ଇଂଜିନିଅର (सं.) | 6 (क) | अभियंता / इंजीनियर |
| ଇତି (सं.) | 13 (ख) | समाप्त |
| ଇତ୍ୟାଦି (क्रि.वि.) | 2 (क) | इत्यादि |
| ଇନ୍‌ସ୍‌ପେକ୍ଟର (सं.) | 15 (ख) | ईन्सपेक्टर |
| ଇନ୍ଦ୍ରିୟ (सं.) | 16 (ख) | इंद्रिय |
| ଇଂରାଜୀ (सं.) | 2 (क) | अंग्रेजी |
| ଉଇଁବା (क्रि.) | 4 (ख) | निकलाना |
| ଉତ୍କଳ (सं.) | 18 (ख) | उत्कल |
| ଉତ୍କଳ ମଣି (सं./वि.) | 7 (ख) | उत्कल मणि |
| ଉଙ୍କିବା (क्रि.) | 8 (ख) | चुपके से देखना, झाँकना |
| ଉଚ୍ଚ (वि.) | 12 (ख) | उँचा |
| ଉଠାଣି (वि.) | 17 (क) | आरोही |
| ଉଠିବା (क्रि.) | 15 (क) | उठना |
| ଉଡ଼ାଜାହାଜ (सं.) | 21 (क) | हवाईजहाज |
| ଉଡ଼ିବା (क्रि.) | 8 (ख) | उड़ना |
| ଉଦ୍‌ଘାଟନ (सं.) | 17 (ख) | उद्घाटन |
| ଉଦ୍‌ବୃଦ୍ଧ (वि.) | 15 (ख) | उदबृद्ध |
| ଊର୍ଦ୍ଧ୍ୱ (वि.) | 11 (ख) | उर्द्ध |
| ଉଦ୍ଦେଶ୍ୟ (सं.) | 21 (क) | उद्देश्य |
| ଉପକାର (सं.) | 12 (क) | उपकार, हित, लाभ |
| ଉପକୃତ (वि.) | 24 (क) | उपकृत |
| ଉପଦେଶ (सं.) | 24 (क) | उपदेश |
| ଉପନ୍ୟାସ (सं.) | 2 (क) | उपन्यास |
| ଉପଭୋଗ (सं.) | 10 (ख) | उपभोग |

| | | |
|---|---|---|
| ଉପର (क्रि.वि) | 12 (क) | ऊपर |
| ଉପହାର (सं.) | 10 (ख) | उपहार |
| ଉପାର୍ଜନ (सं.) | 23 (ख) | कमाई |
| ଉହାଡ (सं.) | 8 (ख) | फाँक |
| ଉତ୍ସବ (सं.) | 21 (क) | उत्सव |
| ଉତ୍ସାହ (सं.) | 21 (ख) | उत्साह |
| ଉନ୍ନତ (वि.) | 2 (ख) | उन्नत |
| ଉନ୍ମନା (वि.) | 20 (ख) | बावला, पागल |
| ଉଲ୍ (सं.) | 14 (ख) | ऊन, पशम |
| ଋତୁ (सं.) | 8 (ख) | ऋतु |
| ଏଆଡ଼ (अ.) | 3 (ख) | इस तरफ |
| ଏଇଟି (अ.) | 1 (ख) | यह |
| ଏଇଠି (अ.) | 1 (ख) | यहाँ |
| ଏକ (सं.) | 6 (ख) | एक |
| ଏକତରଫା (सं./वि.) | 18 (क) | पक्षपात, एक तरफा |
| ଏକମତ (वि.) | 20 (क) | सहमत |
| ଏକାଠି (अ.) | 12 (क) | इकट्ठा |
| ଏକାନ୍ତ (वि.) | 17 (ख) | एकांत |
| ଏକୁଟିଆ (वि.) | 17 (क) | अकेले |
| ଏଣେତେଣେ (अ.) | 5 (ख) | इधर उधर |
| ଏତେ (अ.) | 5 (क) | इतना |
| ଏଥର (अ.) | 5 (क) | इसबार |
| ଏଥିମଧ୍ୟରେ (अ.) | 6 (क) | इसी बीच |
| ଏବେ (क्रि.वि.) | 2 (ख) | अब |
| ଏଣ୍ଡୁରି ପିଠା (सं.) | 10 (क) | एक प्रकार का खाद्य |
| ଐତିହ୍ୟ (सं.) | 17 (ख) | ऐतिह्य |

| | | |
|---|---|---|
| ଓଡ଼ିଆ (सं.) | 2 (ख) | ओड़िआ |
| ଓଡ଼ିଆ ସ୍ୱତନ୍ତ୍ର ଭାଷା ନୟ (सं.) | 15 (ख) | "ओड़िआ स्वतन्त्र भाषा नय" (एक भाषा आंदोलन) |
| ଓଡ଼ିଶୀ (वि.) | 4 (क) | ओड़िशी |
| ଓଷାବ୍ରତ (सं./वि) | 22 (ख) | उषाव्रत |
| ଔଷଧ (सं.) | 3 (क) | औषध, दवाई |
| କଖାରୁ (सं.) | 9 (ख) | कद्दू |
| କଙ୍କଡ଼ା (सं.) | 5 (क) | केकड़ा |
| କଚ୍ଛା (सं.) | 4 (क) | कच्छा |
| କ'ଣ (अ.) | 2 (क) | क्या |
| କଥା (सं.) | 3 (क) | बात |
| କଥା (सं.) | 4 (क) | कथा, कहानी, बात |
| କଥା ପଡ଼ିବା (क्रिं.) | 17 (क) | बात बनना |
| କଥାବସ୍ତୁ (सं.) | 24 (ख) | कथावस्तु |
| କଦଳୀ (सं.) | 9 (क) | केला |
| କବି (सं.) | 2 (ख) | कवि |
| କବିତା (सं.) | 2 (क) | कविता |
| କମ୍ (वि./क्रि.वि.) | 16 (ख) | कम |
| କମରପଟି (सं.) | 4 (क) | कमरपट्टी |
| କମିବା (क्रि.) | 10 (क) | कम होना |
| କର (क्रि.) | 1 (क) | करना |
| କରୁଣା (सं.) | 17 (ख) | दया |
| କଳରବ (सं./वि.) | 8 (ख) | कलरव (ध्वनि) |
| କଳକଳ (सं/वि.) | 12 (ख) | कलकल (ध्वनि) |
| କଳା (सं.) | 6 (ख) | कला |
| କଳାକାର (सं.) | 24 (क) | कलाकार |

| | | |
|---|---|---|
| କଳିକା (वि.) | 20 (ख) | कली |
| କହିବା (क्रि.) | 20 (ख) | कहना |
| କା' କା' (वि.) | 14 (ख) | पक्षीयों की ध्वनि |
| କାଟିବା (क्रि.) | 3 (क) | दुखना,काटना |
| କାଠ (सं.) | 14 (ख) | लकड़ी |
| କାକର (सं.) | 12 (ख) | औस, हिम-बिंदु |
| କାକରା ପିଠା (सं.) | 9 (ख) | एक प्रकार का खाद्य (पाठ देखिए) |
| କାନ (सं.) | 8 (ख) | कान |
| କାନ୍ଦିବା (क्रि.) | 10 (ख) | रोना |
| କାମ (सं.) | 8 (क) | कार्य |
| କାମଧନ୍ଦା (सं.) | 23 (ख) | कामधंधा |
| କାମଳ (वि.) | 18 (क) | पांडुर, पीली |
| କାରଖାନା (सं.) | 12 (क) | कारखाना |
| କାରଣ (सं.) | 11 (क) | कारण |
| କାରୁକାର୍ଯ୍ୟ (वि.) | 18 (ख) | कला मंड़ित |
| କାବ୍ୟ (सं.) | 15 (ख) | काव्य |
| କାର୍ଯ୍ୟ (क्रि.) | 11 (ख) | कार्य |
| କାଲି (क्रि.वि.) | 3 (क) | कल (आनेवाला) |
| କ୍ଲାନ୍ତ (वि.) | 18 (ख) | थकाहुआ |
| କି କି (अ.) | 2 (क) | कौन कौन सी |
| କିଣିବା (क्रि.) | 2 (क) | खरीदना |
| କୁଆଡ଼େ (क्रि.वि.) | 12 (क) | कहाँ |
| କୁ କୁ (सं.) | 14 (ख) | कोयल की गाना |
| କୁକୁଡ଼ା (सं.) | 14 (क) | मुर्गी |
| କୁଟୁମ୍ବ (वि.) | 23 (क) | कुटुंब |
| କୁଣିଆ (वि.) | 14 (ख) | अतिथि, मेहमान |

| | | |
|---|---|---|
| କୁର୍ତ୍ତା (सं.) | 4 (क) | कुर्त्ता |
| କୁନି (वि.) | 16 (ख) | छोटे |
| କୁମାର ପୂର୍ଣ୍ଣିମା (सं.) | 4 (क) | कुमार पूर्णिमा-एक उत्सव का नाम (पाठ देखिए) |
| କୁମ୍ଭୀର (सं.) | 5 (ख) | घड़ियाल, मगरमछ |
| କୁଶଳତା (सं.) | 24 (क) | कुशलता |
| କୁସଂସ୍କାର (सं.) | 24 (ख) | कुसंस्कार |
| କୁଳୁକୁଳୁ (सं.) | 16 (ख) | कल कल नाद |
| କୁଳୁକୁଚା (सं.) | 12 (ख) | कुला, कुल्ली |
| କୁହାଳିଆ (सं./वि.) | 17 (क) | बोलनेवाला, बातूनी |
| କୁହେଳିକାମୟ (वि.) | 17 (ख) | आश्चर्यजनक |
| କୂପ (सं.) | 18 (ख) | कुआँ |
| କୂଳ (सं.) | 19 (ख) | किनारा, तट |
| କେଉଁ (अ.) | 2 (क) | कौन कौन सी |
| କେଉଁଠୁ (अ.) | 12 (क) | नजाने |
| କେଜାଣି (अ.) | 12 (क) | कहाँ से |
| କେତେ (अ.) | 4 (क) | कितनी |
| କେଦାର ଗୌରୀ (सं.) | 13 (ख) | केदार गौरी (मंदिर) |
| କେନ୍ଦ୍ର (सं.) | 21 (क) | केंद्र |
| କେବଳ (अ.) | 2 (क) | केवल |
| କେଡୁଟିଏ (वि.) | 13 (क) | कितनी बड़ी |
| କେମିତି (अ.) | 6 (क) | कैसे, किस तरह |
| କୌଣସି (अ.) | 16 (ख) | कोई, कुछ |
| ଖଣି (सं.) | 6 (क) | खान, खादान |
| ଖଣ୍ଡ (सं.) | 20 (ख) | टुकड़ा |
| ଖଣ୍ଡିଆ (वि.) | 3 (ख) | घाँव, चोट |

ଖତ (सं.) 8 (ख) खाद

ଖନନ (सं.) 18 (ख) खनन, खुदाई

ଖବର (सं.) 23 (क) खबर, हाल-चाल

ଖରା (सं.) 5 (ख) धूप

ଖରାପ (वि.) 3 (क) बुरा, खराब

ଖାଇବା (क्रि.) 1 (क) खाना

ଖାଣ୍ଟି (वि.) 24 (क) शुद्ध, परिशुध

ଖାତିର (सं.) 20 (ख) खातिर

ଖାଦ୍ୟ (सं.) 7 (ख) खाने की चीज, खाद्य

ଖୁବ୍ (क्रि.वि.) 14 (क) खूब्, ज्यादा

ଖୁସି (वि.) 10 (ख) खुशी, आनंद

ଖେଳ (सं.) 8 (क) खेल

ଖୋଜିବା (क्रि.) 7 (क) ढुँढना

ଖୋଦନ (क्रि.) 9 (क) खुदाई

ଖୋସିବା (क्रि.) 4 (क) लगाना

ଖୋଳିବା (क्रि.) 22 (ख) खोदना

ଗଙ୍ଗଶିଉଳି (सं.) 4 (ख) शेफाली फूल

ଗଛ (सं.) 8 (ख) पेड़, पौधा

ଗଂଜା (सं.) 14 (क) मुर्गा

# ଓଡ଼ିଆ ସଂଖ୍ୟାଗୁଡ଼ିକ

## ओड़िआ संख्याएँ

| | |
|---|---|
| ୧ | ଏକ |
| ୨ | ଦୁଇ |
| ୩ | ତିନି |
| ୪ | ଚାରି |
| ୫ | ପାଞ୍ଚ |
| ୬ | ଛଅ |
| ୭ | ସାତ |
| ୮ | ଆଠ |
| ୯ | ନଅ |
| ୧୦ | ଦଶ |
| ୧୧ | ଏଗାର |
| ୧୨ | ବାର |
| ୧୩ | ତେର |
| ୧୪ | ଚଉଦ |
| ୧୫ | ପନ୍ଦର |
| ୧୬ | ଷୋହ୍ଳ |
| ୧୭ | ସତର |
| ୧୮ | ଅଠର |
| ୧୯ | ଉଣେଇଶ |
| ୨୦ | କୋଡ଼ିଏ |
| ୨୧ | ଏକୋଇଶ |
| ୨୨ | ବାଇଶ |
| ୨୩ | ତେଇଶ |
| ୨୪ | ଚବିଶ |
| ୨୫ | ପଚିଶ |
| ୨୬ | ଛବିଶ |
| ୨୭ | ସତାଇଶ |
| ୨୮ | ଅଠାଇଶ |
| ୨୯ | ଅଣତିରିଶ |
| ୩୦ | ତିରିଶ |
| ୩୧ | ଏକତିରିଶ |
| ୩୨ | ବତିଶ |
| ୩୩ | ତେତିଶ |
| ୩୪ | ଚଉତିରିଶ |
| ୩୫ | ପଇଁତିରଶ |
| ୩୬ | ଛତିଶ |
| ୩୭ | ସଇଁତିରିଶ |
| ୩୮ | ଅଠତିରିଶ |
| ୩୯ | ଅଣଚାଳିଶ |
| ୪୦ | ଚାଳିଶ |
| ୪୧ | ଏକଚାଳିଶ |
| ୪୨ | ବୟାଳିଶ |
| ୪୩ | ତେୟାଳିଶ |
| ୪୪ | ଚଉରାଳିଶ |
| ୪୫ | ପଇଁଚାଳିଶ |
| ୪୬ | ଛୟାଳିଶ |
| ୪୭ | ସତଚାଳିଶ |
| ୪୮ | ଅଠଚାଳିଶ |
| ୪୯ | ଅଣଚାଷ |
| ୫୦ | ପଚାଶ |
| ୫୧ | ଏକାବନ |
| ୫୨ | ବାଉନ |
| ୫୩ | ତେପନ |
| ୫୪ | ଚଉବନ |
| ୫୫ | ପଞ୍ଚାବନ |
| ୫୬ | ଛପନ |
| ୫୭ | ସତାବନ |
| ୫୮ | ଅଠାବନ |
| ୫୯ | ଅଣଷଠି |
| ୬୦ | ଷାଠିଏ |
| ୬୧ | ଏକଷଠି |
| ୬୨ | ବାଷଠି |
| ୬୩ | ତେଷଠି |
| ୬୪ | ଚଉଷଠି |
| ୬୫ | ପଞ୍ଚଷଠି |
| ୬୬ | ଛଅଷଠି |
| ୬୭ | ସତଷଠି |
| ୬୮ | ଅଠଷଠି |
| ୬୯ | ଅଣସ୍ତରି |
| ୭୦ | ସତୁରି |
| ୭୧ | ଏକସ୍ତରି |
| ୭୨ | ବାସ୍ତରି |
| ୭୩ | ତେସ୍ତରି |
| ୭୪ | ଚଉସ୍ତରି |
| ୭୫ | ପଞ୍ଚସ୍ତରି |

୭୬ ଛଅସ୍ତରି
୭୭ ସତସ୍ତରି
୭୮ ଅଠସ୍ତରି
୭୯ ଅଣାଅଶୀ
୮୦ ଅଶୀ
୮୧ ଏକାଅଶୀ
୮୨ ବୟାଅଶୀ
୮୩ ତେୟାଅଶୀ
୮୪ ଚଉରାଅଶୀ
୮୫ ପଞ୍ଚାଅଶୀ
୮୬ ଛୟାଅଶୀ
୮୭ ସତାଅଶୀ
୮୮ ଅଠାଅଶୀ
୮୯ ଅଣାନବେ
୯୦ ନବେ
୯୧ ଏକାନବେ
୯୨ ବୟାନବେ
୯୩ ତେୟାନବେ
୯୪ ଚଉରାନବେ
୯୫ ପଞ୍ଚାନବେ
୯୬ ଛୟାନବେ
୯୭ ସତାନବେ
୯୮ ଅଠାନବେ
୯୯ ଅନେଶ୍ୱତ
୧୦୦ ଶହେ